Prescribed by the Utkal University
for
Pre-University Examination—1962.

# କଥା ସଂଗ୍ରହ

ସଂଗ୍ରାହକ

ଶ୍ରୀ ଜାନକୀବଲ୍ଲଭ ମହାନ୍ତି ଏମ୍. ଏ. ଏଲ୍. ଏଲ୍. ବି.

ନୂତନ ମୁଦ୍ରଣ

୧୯୬୧

ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

କଟକ ପବ୍ଲିଶିଂ ହାଉସ୍

ବାଲୁବଜାର, କଟକ—୨

ମୂଲ୍ୟ ଟ ୨ ୲ ଦୁଇଟଙ୍କା ମାତ୍ର

# ସୂଚୀପତ୍ର

# ପୂର୍ବାଭାସ

"ଗୋଟିଏ ଦେଶରେ ଜଣେ ରାଜା ଥିଲେ । ତାଙ୍କର ଜଣେ ବୁଢ଼ା ମନ୍ତ୍ରୀ ଥିଲେ । ମନ୍ତ୍ରୀଟି ବଡ଼ ଚତୁର......

ଦିନେ କଣ ହେଲା ନା, ରାଜା ବାହାରିଲେ ପାରିଧି କରିବାକୁ......।" ଅର୍ଦ୍ଧ ହେଉଥିବା ନାତି ନାତୁଣୀଙ୍କି ଏବେ ବି ଗପ କହି କହି ଅଇ, ବୁଢ଼ୀମା ଶୁଆଇ ପକାନ୍ତି । ଅସରନ୍ତି କଥା । ରଜାପୁଅ ରଙ୍କାଝିଅ କଥା, ବୁଢ଼ୀ ଅସୁରୁଣୀ ଗପ, କଲ୍‌ପରେଇ ବେଶ୍ମ କଥା—ଏମିତି କେତେ କଣ । ଗପ ଶୁଣୁ ଶୁଣୁ ନାତିନାତୁଣୀ ଆଖି ମୁଦି ଦିଅନ୍ତି ।

କେବେ କେଉଁଠାରୁ ଏହି ପ୍ରକାର କାହାଣୀର ସୃଷ୍ଟି ହେଲା, ତା କହିବା ବୋଧହୁଏ ସମ୍ଭବ ନୁହେଁ । ଗପ କହିବା ଆଉ ଗପ ଶୁଣିବା ମଣିଷର ଆଦିମ ପ୍ରବୃତ୍ତି । ସେ କେଉଁ ଶହ ଶହ ବର୍ଷ ତଳର କଥା—ଯେତେବେଳେ ଶିକ୍ଷା, ସଭ୍ୟତା, ସଂସ୍କୃତି ପଥରେ ଏତେଦୂର ଆଗେଇ ଯାଇ ନ ଥିଲା ମଣିଷ । ଅଗନାଅଗ୍ନି ବନସ୍ତରେ, ପାହାଡ଼ ତଳେ ଥିଲା ତାର ବସତି । ଦିନର ଶେଷରେ, କର୍ମକ୍ଳାନ୍ତ ଜୀବନରୁ ଫେରିଆସି ଯେତେବେଳେ ଆଦିମ ମନୁଷ୍ୟ, ତାର ସନ୍ଧ୍ୟା ପର୍ବର ମଜଲିସ୍ ବୈଠକରେ ଯୋଗ ଦେଉଥିଲା, ସେତିକବେଳେ ହୁଏ ତ, କାହାଣୀ ଶୁଣି ଶୁଣି, ସେ କ୍ଳାନ୍ତି ଅବସାଦ ମେଣ୍ଟେଇ ଦେଉଥିବ ।

ଆମ ସାହିତ୍ୟରେ ଏମିତି ଯେତେ "କାହାଣୀ" ଯୁଗ ଯୁଗ ହେଇ ଅଇ, ବୁଢ଼ୀମାଙ୍କ ମନରେ ସାଇତା ରହିଛି, ତାର ଧାରାବାହିକ ଇତିହାସ ଏପର୍ଯ୍ୟନ୍ତ ମିଳି ନାହିଁ । ତଥାପି, ଏଇ 'କାହାଣୀ' ଯେ, ଆମର ଆଧୁନିକ 'କ୍ଷୁଦ୍ରଗଳ୍ପ'ର ଆଦିମତମ ଅବସ୍ଥା—ଏଥିରେ ସନ୍ଦେହ ନାହିଁ ।

ଗଳ୍ପ-ସାହିତ୍ୟର ଲକ୍ଷଣ ରୂପେ ଆମ୍ଭେମାନେ ଦେଖିବାକୁ ପାଉ, ବ୍ରତକଥା, ଓଷା କଥାଗୁଡ଼ିକରେ । "ସୋମନାଥ ବ୍ରତକଥା" —ଏହିପରି ଗୋଟିଏ ବ୍ରତ କଥା—ଯାହାର ସୃଷ୍ଟି ହୋଇଥିଲା ଆଜକୁ ପ୍ରାୟ ତିନିଶହ ବର୍ଷ ତଳେ । ଶିବଙ୍କର ମାହାତ୍ମ୍ୟଗାନ, ନୀତିଶିକ୍ଷା ଦାନ ଗଳ୍ପର ଉଦ୍ଦେଶ୍ୟ ।

ଫକୀରମୋହନ ସେନାପତିଙ୍କ ହାତରେ ଗଳ୍ପ ଗୋଟିଏ ନୂତନ ରୂପ ନେଇଛି । ଓଡ଼ିଶାର ସାମାଜିକ ଉପାଦାନ ସଂଗ୍ରହ କରି ଲେଖକ ତାଙ୍କର ଗଳ୍ପଗୁଡ଼ିକ ସୃଷ୍ଟି କରିଛନ୍ତି । ତାଙ୍କ ସାହିତ୍ୟରେ ବାସ୍ତବତା ସହିତ ଆଦର୍ଶର ଏକ ଅପୂର୍ବ ସମନ୍ୱୟ ହୋଇଛି । 'ରେବତୀ', 'ଡାକମୁନସି', 'ପେଟେଣ୍ଟ ମେଡ଼ିସିନ୍'—ପ୍ରତ୍ୟେକ ଗଳ୍ପରେ ବାସ୍ତବ ଜୀବନ ରହିଛି । ତା ଭିତରେ ଲୁକ୍କାୟିତ ହୋଇ ରହିଛି ଶିକ୍ଷାଦାନର ଉଦ୍ଦେଶ୍ୟ ।

ଆଧୁନିକ ସାହିତ୍ୟରେ କ୍ଷୁଦ୍ର-ଗଳ୍ପର ବହୁଳ ପ୍ରକାଶ ଦେଖିବାକୁ ମିଳେ । ବିଭିନ୍ନ ଲେଖକଙ୍କ ହାତରେ କ୍ଷୁଦ୍ର-ଗଳ୍ପ ଭିନ୍ନ ଭିନ୍ନ ରୂପ ଧାରଣ କରୁଛି । ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ ପ୍ରାଚୀନ ଓଡ଼ିଆ ସାହିତ୍ୟର 'କାହାଣୀ' ଅନେକ ପରିବର୍ତ୍ତନ ମଧ୍ୟ ଦେଇ ଗତି କରିଅଛି । ଏ ଯୁଗର ଗଳ୍ପ-ସାହିତ୍ୟରେ ଶ୍ରୀ ରାଜକିଶୋର ରାୟ, ଶ୍ରୀ ଗୋଦାବରୀଶ ମହାପାତ୍ର, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଶ୍ରୀ ଅନନ୍ତପ୍ରସାଦ ପଣ୍ଡା, ଶ୍ରୀ ରାଜକିଶୋର ପଟ୍ଟନାୟକ, ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ କାହ୍ନୁଚରଣ ମହାନ୍ତି, ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ସ୍ଥାନ ସୁପ୍ରତିଷ୍ଠିତ । ଏମାନଙ୍କ ବ୍ୟତୀତ ବର୍ତ୍ତମାନ ସମୟର ଅନେକ ତରୁଣ ଲେଖକଙ୍କ ଗଳ୍ପସାହିତ୍ୟ ରଚନାରେ

ମନୋନିବେଶ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକଙ୍କର ରଚନା, ଏହି ସଙ୍କଳନରେ ସନ୍ନିବଦ୍ଧ ହୋଇଅଛି ।

ଆଧୁନିକ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପ ଏକ ପ୍ରଧାନ ସ୍ଥାନ ଅଧିକାର କରିଅଛି । ବର୍ତ୍ତମାନ ବୃହତ୍ ଉପନ୍ୟାସ ସ୍ଥାନରେ କ୍ଷୁଦ୍ରଗଳ୍ପ ବିଶେଷ ଆଦୃତ ହେଉଥିବାର ଦେଖାଯାଏ । ଏହାର ଏକ ପ୍ରଧାନ କାରଣ, କର୍ମମୟ ଜୀବନ ମଧ୍ୟରେ ମଣିଷ ଟିକିଏ ମାତ୍ର ଅବସର ପାଇ ଯେପରି ତାକୁ ଉପଭୋଗ କରିବାକୁ ଚାହେଁ । ଅଳ୍ପ ଅବସର ସାଥୀ ସ୍ୱରୂପ, କ୍ଷୁଦ୍ର ଗଳ୍ପ କର୍ମକ୍ଳାନ୍ତ ମଣିଷକୁ ବିଶେଷ ସାହାଯ୍ୟ କରିଥାଏ ।

ମଣିଷର ଚିତ୍ତ ବିନୋଦନ, ସାମାଜିକ ଶିକ୍ଷା, ତଥା ସତ୍ୟ ଏବଂ ଶିବର ପ୍ରଚାର ନିମନ୍ତେ କାହାଣୀ ଉଦ୍ଦିଷ୍ଟ । ଆଖ୍ୟାନ ବସ୍ତୁ, ଚରିତ୍ର ଏବଂ ଘଟଣା କିମ୍ବା ପରିସ୍ଥିତି—ଏହି ତିନିଗୋଟି ବିଷୟ, ଗଳ୍ପ ମଧ୍ୟରେ ପ୍ରଧାନ ଉପାଦାନ ରୂପେ ସ୍ଥାନ ପାଇଥାଏ । ଆଖ୍ୟାନ ବସ୍ତୁର ଆଶ୍ରୟରେ, ଘଟଣା ଏବଂ ପରିସ୍ଥିତିର ଘନଘଟାରେ କ୍ଷୁଦ୍ର ଗଳ୍ପରେ ଚରିତ୍ରମାଳା ବିକଶିତ ହୁଅନ୍ତି ।

ପାଶ୍ଚାତ୍ୟ ସାହିତ୍ୟ, ତଥା ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ ଯେତେବେଳେ କ୍ଷୁଦ୍ରଗଳ୍ପର ଆଶାନୁରୂପ ବିକାଶ ଦେଖା ଦେଲାଣି, ସେତେବେଳେ ଓଡ଼ିଆ ସାହିତ୍ୟରେ, ତାହାର ଉନ୍ନତି ଆଶା କରିବାହିଁ ସ୍ୱାଭାବିକ । ଓଡ଼ିଆ ସାହିତ୍ୟରେ ଯେପରି ଦିନୁ ଦିନ ସାହିତ୍ୟିକ ପତ୍ର ପତ୍ରିକା ବୃଦ୍ଧି ପାଇଲାଣି ଏବଂ ଲେଖକମାନେ ଯେପରି ଗଳ୍ପ-ସାହିତ୍ୟର ବିକାଶ ଦିଗରେ ମନ ଦେଲେଣି, ସେଥିରୁ ଅନୁମିତ ହୁଏ, ଓଡ଼ିଆ ସାହିତ୍ୟରେ 'କ୍ଷୁଦ୍ର-ଗଳ୍ପ' ବହୁଦିନ ପର୍ଯ୍ୟନ୍ତ ଏକ ସୁପ୍ରତିଷ୍ଠିତ ଆସନ ଲାଭ କରିପାରିବ ।

ସଂଗ୍ରାହକ

# ନିଜକଥା

ଆମ ସାହିତ୍ୟରେ ଏବେ ଅନେକ ପ୍ରସିଦ୍ଧ ଗଳ୍ପ-ଲେଖକ ବାହାରିଲେଣି । ହୁଏତ, ସେମାନଙ୍କ ମଧ୍ୟରୁ କେତେକଙ୍କର ନିଜ ନିଜର ଗଳ୍ପ-ଗୁଚ୍ଛ ସଙ୍କଳିତ ହୋଇ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି। କିନ୍ତୁ ବିଭିନ୍ନ ଲେଖକଙ୍କର ଗଳ୍ପ ସଂଗ୍ରହ କରି, ପୁସ୍ତକ ପ୍ରକାଶ କରିବାର ଚେଷ୍ଟା ବିଶେଷଭାବରେ ଦେଖା ଦେଇ ନାହିଁ । ଗୋଟିଏ ପୁସ୍ତକ ଜରିଆରେ, ଏକାଧିକ ଲେଖକଙ୍କର ବିଶେଷତ୍ୱର ପରିଚୟ ଦେବା ଏହିପରି ସଂଗ୍ରହ-ମୂଳକ ପୁସ୍ତକର ପ୍ରଧାନ ଲକ୍ଷ୍ୟ । ଏ ଦିଗରେ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କର ସଂକଳନ କାର୍ଯ୍ୟ ସଫଳ ହୋଇଥିଲି । ତାଙ୍କୁରି ଦେଖି, ଓଡ଼ିଆ ସାହିତ୍ୟରେ ଆଉ ଏକ ଗଳ୍ପ-ସଂକଳନ କରିବାର ଆଗ୍ରହ ହୋଇଥିଲା । ସେତେବେଳେ ଉଦ୍ଦେଶ୍ୟ ଥିଲା ଯେ, କେତେକ ଲେଖକଙ୍କର ଗଳ୍ପର ସମାହାରରେ ଏକ ଗଳ୍ପ-ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଧାରାବାହିକ ଭାବରେ ଆମ ସାହିତ୍ୟରେ ବିଭିନ୍ନ ଯୁଗର ଗଳ୍ପର ପରିଚୟ ଦେଲେ, ପୁସ୍ତକଟି ଅଧିକ ସୁନ୍ଦର ଏବଂ ମୂଲ୍ୟବାନ ହୋଇ ପାରିବ । ସେନାପତି ଯୁଗର ଲେଖକ ଫକୀରମୋହନ ସେନାପତି, ମଧୁସୂଦନ ରାଓ ପ୍ରଭୃତିଙ୍କଠାରୁ ଆରମ୍ଭ କରି, ବାରୁଣୀ * ଯୁଗର ଲେଖକ

---

* 'ବାରୁଣୀ' ନାମରେ ଖଣ୍ଡିଏ ଓଡ଼ିଆ ସାହିତ୍ୟିକ ପତ୍ରିକା ପ୍ରକାଶିତ ହେଉଥିଲା । ସେଥିରେ ପ୍ରକାଶିତ କ୍ଷୁଦ୍ରଗଳ୍ପର ରଚନାଶୈଳୀ ଫକୀରମୋହନ ସେନାପତି ଯୁଗର ଗଳ୍ପ ଶୈଳୀଠାରୁ ପୃଥକ । 'ବାରୁଣୀ'ରେ ସ୍ଥାନ ପାଇଥିବା "କ୍ଷୁଦ୍ରଗଳ୍ପ"ର ରୂପ ସମସାମୟିକ ଯୁଗରେ ବହୁଭାବରେ ପରିବର୍ତ୍ତିତ ହୋଇଅଛି । ତେଣୁ ଓଡ଼ିଆ 'ଗଳ୍ପ ସାହିତ୍ୟ'ର ଆଲୋଚନାରେ, 'ବାରୁଣୀ'ର ଗଳ୍ପ ଲେଖକ-ମାନଙ୍କୁ ଗୋଟିଏ ଶ୍ରେଣୀଭୁକ୍ତ କରିହେବ ।

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଶ୍ରୀ ବୈଷ୍ଣବଚରଣ ଦାସଙ୍କର ରଚନା ମଧ୍ୟ ଦେଇ ସବୁଜ ଯୁଗ ଏବଂ ସମସାମୟିକ ଯୁଗର ଗଳ୍ପ-ଲେଖକଙ୍କର ରଚନା ସହିତ ପାଠକମାନଙ୍କୁ ପରିଚିତ କରାଇବା ଥିଲା ଗଳ୍ପ-ସଂକଳନର ଲକ୍ଷ୍ୟ । ଦୁଃଖର ବିଷୟ, କେତେକ ଲେଖକଙ୍କଠାରୁ ଗଳ୍ପ ଆଣିବାରେ ସମର୍ଥ ହୋଇ ପାରିଲି ନାହିଁ । ତେଣୁ ମୋର ଗଳ୍ପ-ସଂକଳନର ମୌଳିକ ଉଦ୍ଦେଶ୍ୟ ସଫଳ ହୋଇ ପାରିଲା ନାହିଁ । କେବଳ ଯେଉଁ ଗଳ୍ପ ମୁଁ ପାଇଥିଲି, ସେହିଗୁଡ଼ିକୁ ନେଇ ଏହି "କଥାସଂଗ୍ରହ"କୁ ରୂପ ଦେଇଛି । ଯେଉଁ ଲେଖକମାନେ, ସେମାନଙ୍କ ନିଜର ଗଳ୍ପ ପ୍ରକାଶନ କରିବାର ଅନୁମତି ଦେଇ, ଏହି ସଂଗ୍ରହ ପ୍ରକାଶରେ ସାହାଯ୍ୟ କରିଛନ୍ତି, ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଅଛି ।

ସଂଗ୍ରାହକ

# କଥାସଂଗ୍ରହ

## ବୁଢ଼ା ଶଙ୍ଖାରି

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

ପ୍ରାୟ ଫଗୁଣ ମାସ ଶେଷ ସରିକି, ଜଦୁଜଦଅ ଖରବେଳେ ବୁଢ଼ାଟିଏ ଗୋଟିଏ ଗାଁ ମଝିରେ ଯାଉଥିଲା । ଷାଠିଏ ବରଷର ବୁଢ଼ା, ଦାନ୍ତଗୁଡ଼ାକ ସବୁ ପଡ଼ିଗଲଣି, ମୁଣ୍ଡବାଳ ତେଣିକି ଥାଉ ଛାତି ବାଳଗୁଡ଼ାକ ପାଚି ଧୋବ ଫରଫର ଦିଶୁଛି । ବୁଢ଼ା ମୁଣ୍ଡରେ ଗୋଟିଏ ଟୋକେଇ, ଧୂଳିରେ ଆଣ୍ଠୁଯାକେ ବୁଡ଼ିଛି, ଅଷ୍ଟାଙ୍ଗ ଶରୀର ଝାଳରେ ବୁଡ଼ି ଗୋଡ଼ବାଟେ ବହିଯାଉଛି ।

ଗାଁ ମୁଣ୍ଡରେ ଗୋଟିଏ ଘର । ପକା ପିଣ୍ଡା, ସାତ ଶେଣିଆ ଛପର, ଯାଉଁଳି କବାଟ । ବୁଢ଼ା ସେହି ପିଣ୍ଡାରେ ବୋଝଟି ଥୋଇ ଦେଇ ନଥକରି ବସିପଡ଼ିଲା । କିଛିକ୍ଷଣ ପରେ ସେ ଘରୁ ଗୋଟିଏ ଦାସୀ ବାହାରି ଆସିଲା । ଦାସୀ ବୁଢ଼ାକୁ ଚାହିଁ । ପଚାରିଲା, "କିହୋ ଶଙ୍ଖାରି ପୁଅ, ଶଙ୍ଖା ଆଣିଛ କି ?" ବୁଢ଼ା ଉତ୍ତର କଲା, 'ହଁ' । ପୁଣି କହିଲା, "ଝିଅ, ଟୋପାଏ ପାଣି ଦିଅନ୍ତୁ, ବୁଢ଼ା ମଣିଷ, ଖରାରେ ତଣ୍ଟି ଶୁଖିଗଲାଣି ।" ଦାସୀ ପାଣି ଆଣିବାକୁ ଚାଲିଗଲା ।

କିଛିକ୍ଷଣ ପରେ ଲୋଟାଏ ପାଣି ଧେନି ଦାସୀ ଫେର୍ ଆସି ବୁଢ଼ା ପାଖରେ ଥୋଇଦେଲା । ବୁଢ଼ା ଉପରକୁ ଆଁ କରି ଦେଇ ଢକ ଢକ କରି ଅଧ ଲୋଟାଏ ପାଣି ଟେକିଦେଲା । ପାଣି ପିଇ ସାରି ବୁଢ଼ା ଗଭୀରସ ନିଶ୍ୱାସଟାଏ ମୁହଁବାଟେ ପକାଇ କହିଲା, "ଜିଅ ତୋର ବଡ଼ ଧରମ ହେଲା ।" ଦାସୀ କହିଲା, "ହଉ ହେଲା ତ ହେଲା ପଛକେ, ଚାଲ ବହୂ ସାଆନ୍ତାଣୀ ଡାକୁଛନ୍ତି କମିତିକା ଶଙ୍ଖା ଅଛି ଦେଖିବେ ।" ବୁଢ଼ା ଟୋକେଇଟି ନେଇ ଉଠିଲା । ସଦର ଦରଜା ପାରି ହେଲେ ଭିତରେ ପକା ବାହାର, ସାମନାରେ ଚଉପାଢ଼ୀ, ବାଆଁ ପାଖକୁ ଭିତର ଅଡ଼ ଦୁଆର । ସେ ଦୁଆର ପାଖରେ ଓଢ଼ଣା ଦେଇ ବହୂଟିଏ ଛିଡ଼ା ହୋଇଥିଲା । ବୁଢ଼ା ଯାଇ ଟୋକେଇଟି ଥୋଇ ଛିଡ଼ା ହେଲା । ବହୂଟି ଧୀରେ ଧୀରେ ଦାସୀକି କହିଲା, "କି ଶଙ୍ଖା ଅଛି ପଚାରୁ ମା ।" ଦାସୀଟି ଟିକିଏ ମୁଖରା; ସେ କହିଲା, "ଛିକର, ବୁଢ଼ାମିଣିପିଟାକୁ ଏତେ ଲାଜ । ନିଜେ ଟୋକେଇରୁ ଆସି ଦେଖୁ ନାହିଁ ?" କଥାଟା ମନକୁ ଆସିଲା । ବହୂଟି ଓଢ଼ଣା ଅଧେ ଟେକି ଦେଇ ମୁରୁକି ମୁରୁକି ହସି ହସିକା ବାହାରି ଆସି ଟୋକେଇ ପାଖରେ ଛିଡ଼ା ହେଲା । ବହୂଟିର ମୁହଁ ଦିଶିଗଲା । ମୁହଁଟି ଚକା ଦାଟି ଦେଲାପରି; ଚମ୍ପାଫୁଲ ପରି ଗୋରି । ଚାରି ଅଙ୍ଗୁଳ ଓସାର ନାଲି ତହିଁରି ମୟୂର-କଣ୍ଠିଆ ଲୁଗା ଖଣ୍ଡିକ ଗୋଇଠିଯାଏ ଲମ୍ବିଛି । ତା ଭିତର ଦେଇ ବହୂଟିର କଅଁଳ ସୁନାପରି ଗୋରି, ଗୋଟିଏ ଗୋଡ଼ଳରେ ଗଢ଼ା ଦେହଟି ଫୁଟି ଦିଶୁଛି । ବୁଢ଼ାର ଆଖି ପୂରି ଉଠିଲା । ଏଡ଼େ ସୁନ୍ଦର, ଏଡ଼େ ନିକ ବହୂଟିଏ ସେ କେବେ ଦେଖିନାହିଁ । ବୁଢ଼ା ଆଉ ଆଖି ଫେରାଇ ପାରିଲା ନାହିଁ । ଏକା ଧ୍ୟାନରେ ବହୂଟିକୁ ଚାହିଁ ରହିଲା । ବୁଢ଼ାର ଇଚ୍ଛା କଣ କହିବ ବୋଲି, କିନ୍ତୁ ପାଟିରୁ କଥା ଫୁଟିଲା ନାହିଁ । କେତେବେଳକେ ବୁଢ଼ା ମୁହଁ ଫିଟାଇ କହିଲା, "ମା

କି ଶଙ୍ଖା ନବୁ ନେ ।" 'ମା' ବୋଲି ଡାକ ଦେଲାକ୍ଷଣି ବୁଢ଼ାର ଛାତି କୁଣ୍ଡେ ହୋଇଗଲା । ବହୁଟି ନାଜ ଛାଡ଼ିଦେଇ କହିଲା, "ଅସ୍ମାନ୍‌ତାରା ଶଙ୍ଖା ଅଛି ?" ଓଃ ଏଡ଼େ ମିଠା କଥା ! ଏପରି କଥା ତ କେହି କହେ ନାହିଁ । ବୁଢ଼ାର କାନରେ ସେ ସ୍ୱରଟା ଥରକୁ ଥର ବାଜିବାକୁ ଲାଗିଲା । ବୁଢ଼ା କହିଲା, "ନା ମା, ରଙ୍ଗହିଲର, ବଉଳଫୁଲିଆ, ବଗମାଳିଆ, କୁନ୍ଦନଟିପି ଏହି ସବୁ ଅଛି । ଏହିଥିରୁ ଯାହା ନବୁ ନେ ମା; ମୁଁ ଅସ୍ମାନ୍‌ତାରା ତିଆରି ହେଲେ ଆଣିଦେବି ।"

ବହୁଟି ଦେଖି ଦେଖି ମୁଠାଏ ଶଙ୍ଖା ପସନ୍ଦ କଲା । ତେବେ ସେ ମୁଠାକ ହାତକୁ ହେବ କି ନାହିଁ କିଏ କହିବ ? ଏହି ସମୟରେ ବୁଢ଼ା କହିଲା, "ଦେ ମା, ହାତ ଦେ, ମୁଁ ଶଙ୍ଖା ଭରି ଦିଏ ।" ବହୁଟି ହଠାତ୍ ହାତ ବଢ଼ାଇ ଦେଉଛି ବା କିପରି । ଟିକିଏ ଇତସ୍ତତଃ କଲା । ବୁଢ଼ା କହିଲା, "ମା, ମୋତେ ନାଜ କରୁଛୁ ? ମୁଁ ପରା ତୋ ପୁଅ । ପୁଅକୁ ମା ନାଜ କରେ ନା !"

ଦାସୀ ଏହି ସମୟରେ ଠୋ ଠୋ କରି ହସି ଦେଇ କହିଲା, "ବାଁହି, ସାଆନ୍ତାଣିଏ, ଆଚ୍ଛା ବୁଢ଼ା ପୁଅଟିଏ ପାଇଲ ଏଣା; କପାଳ ତ ।" ବହୁଟି ପୁଣି ହସିଦେଇ କହିଲା, "ଦୂର୍" ।

ବହୁଟି ହାତ ବଢ଼ାଇଦେଲା । କେଡ଼େ ଟିକିଏ ନିକ ହାତଟି । କେଡ଼େ ସୁନ୍ଦର ଗୋଲ । ଅଙ୍ଗୁଳିଗୁଡ଼ିକ ଚମ୍ପାକଢ଼ି ପରି । ପାପୁଲିଟି ଢୁଲ ଢୁଲ ହେଉଛି । ଶଙ୍ଖାଗୁଡ଼ିକ କି ସୁନ୍ଦର ଦିଶୁଛି । ଏ କ'ଣ ମଣିଷର ହାତ ? ନା, କେହି କାରିଗର ଠାକୁର ଗଢ଼ିଛି ? ସେ ହାତକୁ ବୁଢ଼ା ତାର ମଳିଆ, ରୁକ୍ଷ ହାତରେ ଧରିବାକୁ ସାହସ କଲା ନାହିଁ । ତା ପରେ ବାଁ ହାତରେ ଥରି ଥରି ହାତଟି ଧରି ପରେ ଶଙ୍ଖା ଭରିବାକୁ ଲାଗିଲା । ଏ ହାତ, ଶଙ୍ଖାରେ ଲାଗେ

ଛଟିଯିବ; ରକତ ବାହାର ପଡ଼ିବ ଯେ । ପୁଣି ଟିକିଏ ରହିଲା । ପୁଣି ଶଙ୍ଖା ପଟିଏ ଆଣି, ଧୀରେ ଧୀରେ ଅତି ସନ୍ତର୍ପଣରେ, ଅତି ସାବଧାନତାର ସହିତ ସେ ପଟିକ କଣ୍ଟୁ ନେଲା । ସେ ହାତଟି ଧରିଥିବା ବେଳେ ବୁଢ଼ାର ଆନନ୍ଦର ସୀମା ରହୁ ନ ଥାଏ, ଯେପରି ତାର ଜୀବନର ସମସ୍ତ ସୁଖ, ସମସ୍ତ ଆଶାର ସେହିଠାରେ ତୃପ୍ତି । ସେ ହାତକୁ ପୁଣି ଛାଡ଼ ଦେବାକୁ ହେଲା । ବୁଢ଼ା ଭାବିଲା, ମୁଁ ଧୃତଧନ ଏହିପରି ଏ ହାତରେ ଶଙ୍ଖା ପିନ୍ଧାନ୍ତୁ କି !

ଏହି ସମୟରେ ସେ ଘରର ସାଆନ୍ତାଣୀ ସେଠାରେ ଆସି ପହଞ୍ଚିଲେ । ଶାଶୁଙ୍କୁ ଦେଖି ବହୁଟି ଓଢ଼ଣା ଟାଣି ଦେଇ ପଳାଇଲା । ଶାଶୁ ଦାସୀକୁ ପଚାରିଲେ, "କି ଲୋ, ଶଙ୍ଖା କିଣୁଥିଲୁ କି ?" ଦାସୀ କହିଲା, "ହଁ, ବହୁସାଆନ୍ତାଣୀ ଏହି ମୁଠାକ ନେବେ ବୋଲି କହୁଛନ୍ତି ।"

ଶାଶୁ କହିଲେ, "ଦାମ କେତେ ?"

ବୁଢ଼ା—ଶଙ୍ଖା ମୁଠାକ, କି ଦାମ ।

ଶାଶୁ—ଫେର, କେତେ ଦେବ ?

ବୁଢ଼ା—ମା' ଠଉଁ ମୁଁ କ'ଣ ଦାମ ନେବି ?

ଶାଶୁ ଦାସୀକୁ ପଚାରିଲେ, "କିଲୋ ! ମା' କ'ଣ ଲୋ ?"

ଦାସୀ ହସି କହିଲା, "ସେଇ ପିଲାଟି ବହୁ ସାଆନ୍ତାଣୀଙ୍କ ପୁଅ ହେଇଛି ।"

ଶାଶୁ ବି ହସିଲେ । କହିଲେ, "ଆଚ୍ଛା, ଏଥର ଦାମ ନେଇଥାଅ, ଆଉ ଥରକୁ ପଛେ ଖାଲି ଦେଇଯିବ । ତମେ ଗରିବ ଲୋକ—"

ବୁଢ଼ା—"ନା, ନା, ମୋ ମାକୁ ମୁଁ ତ ଦେଇଛି; ମୁଁ ଆଉ ଦାମ ନେବି ନାହିଁ । ଶଙ୍ଖା ମୁଠାକ ଲାଗି ମୁଁ ଗରିବ ହୋଇଯିବି ନାହିଁ ।"

ଏହା କହି ଶଙ୍ଖାର ଶଙ୍ଖାମୁଠାକ ରଖିଦେଇ ବୋଝଟି ଧରି ଏକାବେଳକେ ଚାଲିଗଲା । ଆଉ ଡାକିଲେ ଶୁଣିଲା ନାହିଁ । ଦାସୀ ପଛରେ ଦୌଡ଼େଇ ଗୋଡ଼େଇ ଗଲା, କିନ୍ତୁ ସେ ଆଉ ଫେରି ଚାହିଁଲା ନାହିଁ ।

ସେହି ଦିନଠାରୁ ସେ ବୁଢ଼ା ଶଙ୍ଖାର ଦୁଇଦିନେ ତିନିଦିନେ ସେ ଗାଁକୁ ଆସେ । ଶଙ୍ଖାଟା କିଣି ଗୋଟାଏ ନିର୍ଦ୍ଧାରିତ ଦରରେ ଯେ ଲୋକେ ଠେଳି କିଣିବେ । ଅକାଳେ ସକାଳେ, ପୂନେଇ ପର୍ବରେ ସିନା କିଏ ନୂଆ ଶଙ୍ଖା ଖୋଜେ । ବୁଢ଼ାଟା ଖାଲି ଘର ଘର ବୁଲି ଫେରିଯାଏ, କିନ୍ତୁ ଶଙ୍ଖା ବିକ୍ରି ତ ବୁଢ଼ାର ଉଦ୍ଦେଶ୍ୟ ନୁହେଁ । ସିଏ ଆସେ ତାର ସେହି ନିଜ ମା'ଟିକୁ ଦେଖିବା ପାଇଁ । ଯେଉଁଦିନ ଆସେ, କାହାରିକୁ ନ କହି ଦୁଆରଯାକେ ଚାଲିଆସେ । ବୋଝ ରଖିବାକୁ ହୁଏ ନାହିଁ, ଖାଲି ପାଟି କରି ଡାକିଦିଏ, "ନୂଆଶଙ୍ଖା ନେବ ?" ତା ପାଟି ଶୁଣିଲାକ୍ଷଣି ବହୂଟି କୁଆଡ଼େ ଥାଏ, ଆସି ଦୁଆର ପାଖରେ ଟିକିଏ ଠିଆ ହୁଏ, ବୁଢ଼ାଟି ଟିକିଏ ଅନାଏ; ଚାହିଁ ଦେଲାକ୍ଷଣି ବୁଢ଼ାର ମନ ପୂରି ଉଠେ । ପଚାରେ, "ମା, ଆଜି ଶଙ୍ଖା ନବୁ ?" ବୁଢ଼ାର ଇଚ୍ଛା କାଳେ ନବାକୁ କହିବ; ତାହାହେଲେ ତା ମା'ର ଚମ୍ପାଫୁଲିଆ ସୁନ୍ଦର ହାତଟିରେ ସେ ଶଙ୍ଖା ଛନ୍ଦି ଦେବ । କିନ୍ତୁ ବହୂଟି ମୁଣ୍ଡ ହଲାଇ ଦିଏ । ବୁଢ଼ା ଫେରି ଚାଲିଯାଏ ।

ଦିନେ ଦିନେ ଯଦି ବହୂଟିର ଆସିବାକୁ ଡେରି ହୁଏ, ସେ ଦାସୀଟି ହୁରି କରି ଦିଏ; "ବହୂସାନ୍ତାଣିଏ, ତମ ପୁଅ ଆଇଲାଣି ।" ବୁଢ଼ା ଦୁଇଥର, ଚାରିଥର 'ନୂଆ ଶଙ୍ଖା ନେବ' ବୋଲି ଡାକିଲାରୁ, ତା ମା'ଟି ଆସି ଠିଆ ହୁଏ । ବୁଢ଼ା ଯେଉଁଦିନ ଆସେ, ପ୍ରାୟ ଏହି କଥା, ଏହି ଅଭିନୟ ନିତି ନିତି । ବୁଢ଼ା ଫେରିଲା ବେଳକୁ ଭାବେ

"ମା'ର ଅସ୍‌ମାନ୍‌ତାରା ଶଙ୍ଖା ଉପରକୁ ମନ, କେବେ ସେଥିରୁ ମୁଠାଏ ଅଣି ଦେବ ।" ଶେଷରେ ଠିକ୍ କଲା ଅସନ୍ତା ରଜସଂକ୍ରାନ୍ତି ବେଳକୁ ଯୁଅଡ଼ୁ ହେଲେ ମା' ଲାଗି ଅସ୍‌ମାନ୍‌ତାରା ମୁଠାଏ ଅଣିବ, ମା ନୂଆ ଶଙ୍ଖା ନାଇବ, ମୋତେ ହାତ ଦେଖାଇବ, ମୁଁ ଶଙ୍ଖା କରୁଛି ଦେବ । ଏହାସ୍ବା ଭାବିଲାକ୍ଷଣି ବୁଢ଼ାର ମନ ଭାରି ଉତ୍ଫୁଲ୍ଲ ହୋଇଯାଏ । ବୁଢ଼ା "ରଜସଂକ୍ରାନ୍ତିକୁ ଚାହିଁ ରହିଥାଏ । ରଜସଂକ୍ରାନ୍ତିଟି ଏଥର ତାର ଭାରି ଅନନ୍ଦର ଦିନ; ତା ମା' ଲାଗି ସେ ଅସମାନ୍‌ତାରା ଶଙ୍ଖା ଅଣିବ, ମା କେଡ଼େ ଖୁସି ହେବ ।

ବୈଶାଖମାସ ହେଲା । ବୁଢ଼ା ଲୋକ, ଏଥିରେ ଖରାରେ ରୋଜ ରୋଜ ବାହାରିଲା, ପାଣିପିଆ; ଦେହରେ ସହିଲା ନାହିଁ, ବୁଢ଼ାକୁ ଜ୍ୱର ହେଲା । ଦେଖୁଁ ଦେଖୁଁ ଭାରି ଜ୍ୱର । ଗୋଡ଼ ହାତ ଫୁଲିଗଲା । ସମସ୍ତେ କହିଲେ ବୁଢ଼ା ଆଉ ବଞ୍ଚିବ ନାହିଁ । ବୁଢ଼ାର କିନ୍ତୁ ସେ ଦିଗକୁ ଭାବନା ନାହିଁ । ସେ ସବୁବେଳେ ଭାବି ହେଉଥାଏ ଯେ କେଉଁଦିନୁ ସେ ମା'ଙ୍କୁ ଦେଖିବାକୁ ଯାଇନାହିଁ । ସେଥିପାଇଁ ମନଟା ଅଉଟି ପାଉଟି ହେଉଥାଏ ।

ଦେଖୁ ଦେଖୁ ରଜସଂକ୍ରାନ୍ତି ଅସି ପାଖ ହୋଇଗଲା । ବୁଢ଼ା ଦୁଇମାସ ହେଲା ମା'ଙ୍କୁ ଦେଖିବାକୁ ଯାଇନାହିଁ । ଚାଲି ପାରୁଥିଲେ ଯିମିତ ହେଲେ ଦେଖି ଅସୁ ଥାଆନ୍ତା । କିନ୍ତୁ ରଜକୁ ତ ଅସ୍‌ମାନ୍‌ତାରା ଶଙ୍ଖା ମୁଠାଏ ନିଶ୍ଚୟ ଦେବାକୁ ହେବ । ବୁଢ଼ା ଅନେକ କଷ୍ଟରେ ଉଠି ବସି ନିଜ ହାତରେ ଶଙ୍ଖା ତିଆରି କଲା । ଅଉ କେହି କରିଦେଲେ କାଳେ ମା' ମନକୁ ନ ଅସିବ । ଷାଠିଏବର୍ଷକାଳ ଶଙ୍ଖା ଗଢ଼ି ଗଢ଼ି ସେ ଯେତେ ହାତ ସଫେଇ ହାସଲ କରିଥିଲା, ସବୁ ସେଥିରେ ଲଗାଇଲା । ଦିନକ କାମ ଚାରିଦିନ ଲାଗୁ ପଛକେ କାମଟି କିମିତ ସରସ ହେଉ । ରଜ

ଦୂଇଦିନ ଥାଇ କାମ ଶେଷ ହେଲା । ମନ ଯେମିତି ଫଳ । ଏପରି ଗଢ଼ଣର ଶଙ୍ଖା ତା ଜୀବନରେ ତା ହାତରେ କେବେ ଉଠିନ ନାହିଁ । ଶଙ୍ଖା ଦେଖି ବୁଢ଼ାର ମନ ଭାରି ଖୁସି । ତା ମା' ହାତକୁ ଏ ଶଙ୍ଖାମୁଠିକ ଖୁବ୍ ମାନିବ ।

ରଜ ଆଗଦିନ ପହିଲି ରଜ । ଆଜି ଝିଅ ବୋହୂଏ ନୂଆ ଶଙ୍ଖା ନୂଆ ଶାଢ଼ୀ ପିନ୍ଧନ୍ତି । ରାତସାରା ବୁଢ଼ାର ନିଦ ନାହିଁ । ସକାଳୁ ଉଠି ବୁଢ଼ା ଭାବିଲା, "ମୁଁ ତ ଚାଲି ପାରୁନାହିଁ, କଣ କରିବି । ଆଜି କିଏ ନେଇ ଗଲେ ତ ହେବ ନାହିଁ । ମା'କୁ ଛେଉଦିନୁ ଦେଖି ନାହିଁ, ସତେ କଣ ଏଥିରୁ ବଞ୍ଚିବି ଯେ,—ଥରେ ଦେଖି ଆସେ । ଆଜି ମା'ର ସେହି ହାତରେ ଶଙ୍ଖା କିଛି ଦେବି ।" ମା'ର ହାତଟି ମନେ ପଡ଼ିଗଲାକ୍ଷଣି ବୁଢ଼ାର ଗଦାଏ ବଳ ଆସିଲା । ବୁଢ଼ା ସଅଳ ସଅଳ ମୁଠାଏ ଖାଇ ଦେଇ ଶଙ୍ଖା ମୁଠିକ ଗାମୁଛାରେ ବାନ୍ଧି ବାହାରିଲା । ଅତି କଷ୍ଟରେ ଭିଡ଼ାଏ ଭିଡ଼ାଏ ପାଦ ପକାଇ ଚାଲିଥାଏ । ପାଞ୍ଚକୋଶ ବାଟ, ପହୁଞ୍ଚିଲା ବେଳକୁ ବେଳ ଗଡ଼ିଗଲାଣି ।

ବୁଢ଼ା ଯାଇ ଯେଉଁଠାରେ ଛିଡ଼ାହୋଇ ଡାକୁଥିଲା ସେହିଠାରେ ଛିଡ଼ାହେଲା । ମନରେ କେତେ ଆନନ୍ଦ, କେତେ ଉତ୍ସାହ । ଡାକିଲା, "ଶଙ୍ଖା ନବ ?" କେହି ଶୁଣିଲେ ନାହିଁ । ପୁଣି ଡାକିଲା "ମା' ଲୋ ଶଙ୍ଖା ନବୁ ପରା ।" ତେବେ ବି କେହି ଆସିଲେ ନାହିଁ । ବୁଢ଼ା ଅଧୀର ହୋଇ ପଡ଼ିଲା । ଦୁଇଥର ଡାକ ସାରିଲାଣି, କେହି ଜବାବ ପଦେ ଦେଉ ନାହିଁ । ଥରେ ଡାକିଲେ ତ ମା' ତାର ଆସି ଦୁଆରବନ୍ଧ ପାଖରେ ଛିଡ଼ା ହୋଇ ଯାଉଥିଲା । ପୁଣି ଡାକିଲା, "ମା' —ମୁଁ ଆସିଛି । ଶଙ୍ଖା ଆଣିଛି ତୋ ପାଇଁ ।" ଏଇଥର ସାଆନ୍ତାଣୀ ନିଜେ ବାହାରି ଆସିଲେ, ତାଙ୍କ ପଛେ ପଛେ ସେହି ଦାସୀ ।

ସାଆନ୍ତାଣୀଙ୍କୁ ଦେଖି ବୁଢ଼ା କହିଲା, "ମୋ ମା' କାହିଁ, ମୁଁ ତା ପାଇଁ ଅସ୍ମାନ୍‌ତାରା ଶଙ୍ଖା ଆଣିଛି, ରଜରେ ପିନ୍ଧିବ ।" ଦାସୀ ତ ଏତେବେଳକୁ ଦୂର କରି ଦିଆଇ ଦିଅନ୍ତାଣି—ସେ କିଛି କହିଲା ନାହିଁ । ସାଆନ୍ତାଣୀ ଧୀରେ ଧୀରେ କହିଲେ, "ନା, ଶଙ୍ଖା ଲୋଡ଼ା ନାହିଁ ।" ବୁଢ଼ା କହିଲା, "ନା, ନା, ମୁଁ ମୋ ମା' ଲାଗି ବଡ଼ ଶରଧାରେ ଆଣିଛି ।"

ସାଆନ୍ତାଣୀ—ନା, ଶଙ୍ଖା କେହି ନେବେ ନାହିଁ, ଯା—

ବୁଢ଼ା—ହଉ, ଶଙ୍ଖା ନ ନେଲେ ନାହିଁ, ମୋ ମା'କୁ ଥରେ ଡାକିଦିଅ ମୁଁ ଦେଖିବି । କେଉଁ ଦିନରୁ ଦେଖି ନାହିଁ ।

ସାଆନ୍ତାଣୀ—ଦେଖା ହୋଇ ପାରିବ ନାହିଁ ।

ବୁଢ଼ା ମୁଣ୍ଡରେ ବଜ୍ର ପଡ଼ିଲା, "ଦେଖା ହୋଇ ପାରିବ ନାହିଁ । ମୋ ମା'କୁ ମୁଁ ଥରେ ଦେଖି ପାରିବି ନାହିଁ ।" ବୁଢ଼ାର ଆଖି ଛଳ ଛଳ ହୋଇ ଉଠିଲା । ସେ କାନ୍ଦ କାନ୍ଦ ହୋଇ କହିଲା, "ଥରଟିଏ ଦେଖିବି—ମୁଁ ଆଉ ବସିବି ନାହିଁ ।"

ସାଆନ୍ତାଣୀ ଦାସୀକୁ କହିଲେ, "ଯା, ବହୂକୁ ଡାକ ଦେ ।" ଦାସୀ ଚାଲିଗଲା । କିଛିକ୍ଷଣ ପରେ ବହୂ ଆସି ଦୁଆର ପାଖେ ଛିଡ଼ା ହେଲା । ସେଇଠି ସେ ସବୁଦିନେ ଛିଡ଼ା ହୁଏ । ଆସିଲାବେଳକୁ ଝୁମୁରୁ ଝୁମୁରୁ ହୋଇ ଚାଲି ଆସେ । ଛିଡ଼ା ହୋଇ ବୁଢ଼ାକୁ ଚାହିଁ ଦିଏ । ତାର ହସ ହସ ମୁହଁଟି ଦେଖି ବୁଢ଼ାର ଆନନ୍ଦର ସୀମା ରହେ ନାହିଁ । ଆଜି ନିଶବ୍ଦରେ ଆସି ଛିଡ଼ା ହେଲା । ସେ ଗୋରି ଅଙ୍ଗୁଳି ଲେଖାଏଁ ନାଲି ତହଁରେ ଶାଢ଼ୀ ନାହିଁ କି କୁମ୍ଭକନାରି ଦକ୍ଷିଣୀ ପାଟ ନାହିଁ । ଗୋଡ଼ ଦୁଇଟା ଲଙ୍ଗଳା, ପିନ୍ଧିଛି ଗଣ୍ଡେ ଧଳା

ଥାନ ଲୁଗା । ବୁଢାର ଦେହ ଥରି ଉଠିଲା, ମୁଣ୍ଡ ଘୂରିଗଲା; ବୁଢ଼ା ଆଖି ବୁଜି ପକାଇଲା । ପୁଣି ଚାହିଁ ଦେଲାବେଳକୁ ତାର ସେହି—ହାତଟି ଦଶିଗଲା—ହାତରେ କିଚ୍ଛି ନାହିଁ । ବୁଢ଼ା ଭୋ, ଭୋ କରି ରଡ଼ିକରି ଉଠିଲା । ବହୂଟି ଫେରି ପଡ଼ି ଚାଲିଗଲା । ବୁଢ଼ା କହିଲା, "ମା' ଲୋ, ମୁଁ ନ ମରି କାହିଁକି ତୋତେ ଦେଖିବାକୁ ଆସିଲି । ଏହିତା ଦେଖିବା ଲାଗି ନା ଲୋ ମା'—" ବୁଢ଼ା ଆଉ କହି ପାରିଲା ନାହିଁ । ଗାମୁଛାରୁ ତାର ବଡ଼ ଯତନର ବଡ଼ ଶରଧାର ଶଙ୍ଖା ମୁଠିକ ଫିଟାଇ ପକାଇ ବାହାରେ କଚାଡ଼ି ଦେଲା । ଶଙ୍ଖା ମୁଠାକଯାକ ଚୂନା ହୋଇଗଲା । ତହୁଁ ସେ ଏକମୁହାଁ ହୋଇ ଫେରି ଚାଲିଗଲା । ଦାସୀ ଓ ଶାଶୁ ରଡ଼ି କରି ଉଠିଲେ ।



# ଆଶ୍ଚର୍ଯ୍ୟ ଥିଲେ ବୋଲି

ଶ୍ରୀ ବ୍ରଜକିଶୋର ରାୟ

ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଛି ।

ଢାଲଚେରଠାରୁ ରେଲ୍ ଲାଇନ୍ ଉପରେ ଗୋଟିଏ ପାସେଞ୍ଜର ଟ୍ରେନ୍ ଗଡକରି ଆସୁଛି । ଏ ଲାଇନ୍‌ରେ ଗାଡ଼ିର ଗତି ବଡ଼ ମନ୍ଥର । ପ୍ରତି ଧୂମ୍ର ଫୁତ୍କାରର ତାଳେ ତାଳେ କେତେ ଗୁଡ଼ିଏ ଲୁହାର ଚକ ଲୁହା ଧାରଣା ଉପରେ ଗଡ଼ି ଆସୁଥିଲା ।

ଖଇରା ଭୂଇଁ ଉପରେ ରକ୍ତରଶ୍ମି ହରାଇ ସୂର୍ଯ୍ୟ ତଳକୁ ଯାଉଥିଲେ । ଦୂର ପଲ୍ଲୀ ଭିତରେ ଗୋଟିଏ ଦୁଇଟି ଗୋଧନଦଳ ମାଟି ଉଡ଼ାଇ ଯାଉଥିବାର ଦୃଶ୍ୟ ଦିଶିଯାଉଥିଲା ।

ଟ୍ରେନ୍ ଭିତର କୋଠରିଗୁଡ଼ିକରେ ପ୍ରଦୀପ ଜଳି ଉଠିଲାଣି । ଆରୋହୀମାନଙ୍କର ପୂର୍ବର ପାଉଁଶିଆ ମୁହଁ ଆଲୋକିତ ହୋଇଯାଇଛି ।

ଚିହ୍ନିଲି । ଓଡ଼ିଶାର କୌଣସି କଲେଜରେ ଜଣେ ବିଜ୍ଞାନ ଅଧ୍ୟାପକ; ଓଡ଼ିଶାର କୌଣସି ଗୋଟିଏ ଗଡ଼ଜାତର ଜଣେ ଦେୱାନ୍; ଓଡ଼ିଶାର କୌଣସି ଗାନ୍ଧୀ ଆଶ୍ରମର ଜଣେ କଂଗ୍ରେସ କର୍ମୀ ଓ ଓଡ଼ିଶାର କୌଣସି ତେଲ୍ ମିଲର ଜଣେ ପୁଞ୍ଜିପତି ମାରୁଆଡ଼ି । ଆରୋହୀ ଭିତରେ ଏମାନଙ୍କୁ ମୁଁ ଆଗରୁ ଚିହ୍ନିଥିଲି । ସେମାନଙ୍କ ସହିତ ମୁଁ ଆଳାପ କରିଥିଲି । ଅଚିହ୍ନା ଲୋକଙ୍କ ଭିତରେ ମାନ୍ୟବ୍ୟକ୍ତି ବୋଧହୁଏ ନ ଥିଲେ; ଗୁଣୀ ବ୍ୟକ୍ତି ବି ନ ଥିଲେ । ଯେଉଁମାନେ ଥିଲେ, ସେମାନେ ସବୁବେଳେ ନ ଥିଲା ପରି ଟ୍ରେନ୍‌ରେ ଯାତାୟାତ କରନ୍ତି । ଦେଖାଶୁଣା ଜୀବ ଏମାନେ; କିନ୍ତୁ କେହି କେବେ ଏମାନଙ୍କୁ ଦୃଷ୍ଟି ଦିଅନ୍ତି ନାହିଁ । ଆଳାପ କଥା ଦୂରେ ଥାଉ ।

ତାଳ ରଙ୍ଗର ଅଣ୍ଟ ଉପରକୁ ଖଣ୍ଡେ ଖଣ୍ଡେ ଲୁଗା ପିନ୍ଧି ଗୁଡ଼ା ପାଞ୍ଚ ଜଣ ପୁରୁଷ ଓ ତାଙ୍କ ସଙ୍ଗେ ସେହି ଭଳି ଦେହ ଘୋଡ଼ାଇ ଅଳ ଖଣ୍ଡେ ଖଣ୍ଡେ ତାଳ ରଙ୍ଗର ମାଇପି ପିନ୍ଧା ପିନ୍ଧି ମାଇପି କେତେ ଜଣ ବସି ରହିଥିଲେ; ବେଞ୍ଚ ଉପରେ ନୁହେଁ, ତଳେ । ଅଧପୋଡ଼ା ବିଡ଼ି, ଖଙ୍କାର, କଦଳୀ ଚୋପା, କୋଷ୍ଟା ପତ୍ର, ପାନପିକ ଓ ସର୍ବୋପରି ନାକର ତରଳ ଦ୍ରବ୍ୟ ପଦାର୍ଥ ସମନ୍ୱୟରେ ଯେଉଁଠି ଗୋଟିଏ ଶଯ୍ୟା ପଡ଼ିଥିଲା, ସେଇଠି, ତା'ରି ଉପରେ ସେମାନେ ବସିଥିଲେ ।

ସେମାନେ ବଡ଼ କାକୁସ୍ଥ ଦେଖା ଯାଉଥିଲେ, ସତେ କି କେହି ତାଙ୍କୁ କରୁଣା ଦେଖାଇ ଏଡ଼େ ବଡ଼ ଯାନରେ ବସିବାକୁ ଆଜ୍ଞା ଦେଇଛି ।

ତାଙ୍କ ଦଣ୍ଡେ ମୁଁ ଚାହିଁ ରହିଥିଲି । ଏକ ପାଖେ ଅସ୍ତାୟମାନ ସୂର୍ଯ୍ୟର ରଶ୍ମି ସଞ୍ଚାରର ଅପୂର୍ବ ଶୋଭା, ଅନ୍ୟ ପାଖେ ଟ୍ରେନର ଏହି ଆରୋହୀଦଳ ।

ସମ୍ବଲପୁର ଲର୍ ଷ୍ଟାଣ୍ଡ ପାଖେ ଗଡ଼ଜାତର ଦେବାନଙ୍କ ସଙ୍ଗେ ପ୍ରଥମେ ଦେଖା ହୋଇଥିଲା । ସେ ମୋତେ ଚିହ୍ନି ନ ଥିଲେ ପରେ ଚିହ୍ନିଲେ, ବୋଧହୁଏ କେହି ଜଣେ ସେଠାରେ ମୋର ପରିଚୟ କରାଇ ଦେଇଥିଲେ । ପରିଚୟ ଅଦ୍ୟ ପ୍ରାନ୍ତ ସୂକ୍ଷ୍ମଭାବରେ ଶେଷ ନ ହେଉଣୁ ଦେବାନ୍ ସାହେବ ଏକପ୍ରକାର ଚିତ୍କାର କରି ଅତି ପାଖରେ ଛିଡ଼ା ହୋଇଥିବା ଜଣେ ଅଧୋବଦନା ଅଥଚ ଅଧୁନିକା ତରୁଣୀଙ୍କୁ ମତେ ଦେଖାଇ କହିଥିଲେ—

"ଆରେ ଅଭା, ଏ ଜଣେ ଲେଖକ, ନାଁ ବୋଧହୁଏ ଶୁଣିଥିବୁ ଏ ହେଉଛନ୍ତି ଶ୍ରୀ··· । ତୁ ବୋଧହୁଏ ତାଙ୍କର ବହି ତୁମ

କ୍ଲାସରେ ପଢ଼ୁଥିବୁ । ଏହି ଭଲ ଲୋକଙ୍କ ସଙ୍ଗେ ଦେଖାହେବା ଭାଗ୍ୟର କଥା ।

ମୁଁ ଲଜ୍ଜିତ ହେଲି । ଅଭ୍ର ସଲ୍ଲଜ ଭାବ ଦେଖାଇଲେ । ତାଙ୍କର ବ୍ରୀଡ଼ାଭାବ କାଟିଦେବା ପାଇଁ ମୋ ପ୍ରତି ତାଙ୍କର ମୃଦୁ 'ନମସ୍କାର' ଧ୍ୱନି ତାଙ୍କୁ ସାହାଯ୍ୟ କଲା; ମୋର ସଂକୋଚ ଭାବ କାଟିଦେବା ପାଇଁ ମୋର 'ପ୍ରତି ନମସ୍କାର' ବାଣୀ ବୋଧହୁଏ ମତେ ସାହାଯ୍ୟ କଲା ।

ସମୟ ଥିଲେ ଚିନ୍ତା କରିଥାନ୍ତି, ମୋର ନାମ ସହିତ ଓଡ଼ିଶାର ବାତାବରଣ ଭିତରେ ଯେ ଗୋଟିଏ ଛୋଟ ବାୟୁମଣ୍ଡଳ ସଂପୃକ୍ତ ଓ ଯାହାର ଅକୁଞ୍ଚନ ଓ ସଂକୁଚନ ଓଡ଼ିଶାର ବହୁ କ୍ଷେତ୍ରରେ ମାର୍ଜିତ ହେଉ ବା ଅମାର୍ଜିତ ହେଉ, ଧ୍ୱନିତ ହୁଏ, ତାହା କେତେଦୂର ଅଭ୍ରର କୁସୁମ-କୋମଳ ହୃଦୟକୁ ବ୍ୟଥିତ କରିପାରେ ।

କିନ୍ତୁ ସମୟ ନ ଥିଲା । ଲରି ଛାଡ଼ିବା ସମୟ ହୋଇଥିଲା । ଅଭ୍ର ବସିଲା ମହିଳାସନରେ, ଆଉ ମୁଁ ଓ ଦେବାନ୍ ବସିଲୁଁ ପୁରୁଷାସନରେ ।

ଭିକ୍ଷା ଯେଉଁ ଭିକ୍ଷୁକ ମାଗେ, ସେ କାହିଁକି ଲରି ଛାଡ଼ିବା ବେଳକୁ, ଟ୍ରେନ୍ ଡବା ଭିତରେ, ପରୀକ୍ଷା ଦେଇ ଗଲାବେଳକୁ, ହୋଟେଲ ଦୁଆର ମୁହଁରେ, ସିନେମା ଗୃହ ଆଗରେ ହାତ ପତେଇଦିଏ, ତାହା ବୁଝିବା ମନସ୍ତାତ୍ତ୍ୱିକମାନଙ୍କ ପକ୍ଷରେ ସହଜ ହୋଇପାରେ । ପ୍ରାଚୁର୍ଯ୍ୟ ଓ ତୃପ୍ତି ପାଖେ ପାଖେ ଦୈନ୍ୟ ଓ ଅଭାବ କର ପତେଇ ଯେଉଁ ଅଭିଯୋଗ ବାଢ଼େ, ସେଥିରେ ରହସ୍ୟ ଅଛି, ଗ୍ଲାନି ବି ଅଛି ।

ବସ୍‌ର ଘୂରନ୍ତା ଚକ ଘୂରିବାକୁ ଆରମ୍ଭ କରିଛି କି ନାହିଁ ଗୋଟିଏ ପଙ୍ଗୁ ଦେବାନ୍ ବାବୁଙ୍କୁ ହାତ ପତେଇ ଦେଇଛି ।

ଅଥବା ସେ, ପଡ଼ିପିବାର ଭୟ୍ ତାହାର ଥିଲା । ସେହି ଭୟକୁ ଭ୍ରୂକ୍ଷେପ ନ କରି ସେ ଦଉଡ଼ି ଦଉଡ଼ି ଯୋଡ଼ହାତରେ ମାଗୁଥାଏ "ପଇସାଟିଏ, ଗୋଟିଏ ପଇସା— ହେ, ବାବା ।"

ଦେବାନଙ୍କ ମୁହଁରେ ବିରକ୍ତି ଓ କ୍ରୋଧର ଚିହ୍ନ । ଶେଷ ମୁହୂର୍ତ୍ତକୁ ସେ ଅବିଷ୍କାର କଲେ ଯେ, ଟିଫିନ ବାକ୍ସ ଅଣ୍ଟା ସଜାଡ଼ି ଆଣିଛି, ଅଥଚ ଷ୍ଟେସନ୍‌ର ପ୍ରସିଦ୍ଧ ଗଙ୍ଗୋଦ୍ୟାନ କୂପର ସ୍ୱଚ୍ଛ ନୀର ସେ ସୋରେଇରେ ଆଣିପାରି ନାହିଁ । ଅଣ୍ଟାକୁ ସେ ସେଇଠି ଚେତେଇ ଦେଇଥିଲେ ଯେ, ବମ୍ବେ ବା କଲିକତା ଗଲେ ମଧ୍ୟ ଗଙ୍ଗକୂପର ଜଳ ନେବାକୁ ସେ ଭୁଲନ୍ତି ନାହିଁ । କାରଣ ବାଟରେ ଘାଟରେ ଯାହା ତାହା ପାଣି ପିଇବା ଅର୍ଥ ମୃତ୍ୟୁ । ତା ପରେ ଏହି ପଙ୍ଗୁ ଭଳି ଭିକାରିଗୁଡ଼ାକ ସମ୍ଭବରେ ଯେଉଁ ମାଟିପାଣି ଅଛନ୍ତି, ତାହା ସହିତ ସୂକ୍ଷ୍ମ ଜୀବ ସଂଯୋଗ ରଖିଲେ ପ୍ରାଣ ଆଉ ରହିବ ନାହିଁ ।

ଡ୍ରାଇଭର ବସ୍ ଛାଡ଼ିପାରୁ ନାହିଁ । ଦେବାନଙ୍କର ଅସୁବିଧା ହୋଇଛି । ବସ୍ ବି ସେହି ଷ୍ଟେସନ୍ ଭିତରେ ଯାଏ । ଡ୍ରାଇଭରର ମନ ଖରାପ । ପ୍ରଥମେ ହାତ ଯୋଡ଼ି ସେ ଷ୍ଟିଅରିଂ ଚକକୁ ନମସ୍କାର କରିସାରିବା ପରେ ଏ ଯେଉଁ ଦୁର୍ଯୋଗ, ସେଥିରେ ତାର ରାଗ ହେଲା ବିଚରା ଭିକାରି ଉପରେ । ଅକଥ୍ୟଭାଷାରେ ସେ କହିବାକୁ ଆରମ୍ଭ କରିଛି । ଦେବାନ୍ ବାବୁ ବି ସମର୍ଥନ କଲେ ।

"ଏଗୁଡ଼ାକ ଚୋର, ବଦମାସ, ବ୍ୟବସାୟ ଖୋଲିଛନ୍ତି— ବାହାର, ବାହାର ।"

ମୋ ପାଖରେ ଦୋପଇସିଟିଏ ନ ଥିଲା । ଗୃହିଣୀ—ସେତକ ବଢ଼େଇ ଦେଲ । ବସ୍ ଗଡ଼ିଲା ।

ଆଠମଲ୍ଲିକ—

ଖିରି, ଧୂଳି ଓ ଅଣ୍ଟୁଯାକ ବସି ରହିବାର କଷ୍ଟରୁ ମୁଁ ଯାହି ପାଇଲି । ଘନଚ୍ଛାୟା ତଳେ ମୁଁ ବିଶ୍ରାମ କଲି । ଦେଖିଲି, ମୋର ଜଣେ ଅଧ୍ୟାପକ ବନ୍ଧୁ ଅଠମଲ୍ଲିକ ବସିରେ ଯାଉଛନ୍ତି । ଆଳାପ ହେଲା । ବିଜ୍ଞାନର ଅଧ୍ୟାପକ ସେ, ତେଣୁ କଥା କଥାକେ ତାଙ୍କ ତୁଣ୍ଡରୁ ବାହାରେ ଅମେରିକା—ଅମେରିକାର ସଭ୍ୟତା, ଅମେରିକାର ସାଇସ୍କ୍ରେପର (ନଭଶ୍ଚୁମ୍ବି ଅଟ୍ଟାଳିକା), ଅମେରିକାର ପୁରୁଷ ଓ ସ୍ତ୍ରୀ, ଅମେରିକାର ଉଦ୍ଭିଦ, ଅମେରିକାର ଜାନ୍ତବ, ଅମେରିକାର ଫ୍ରିଲଭ (ଶସ୍ତା ପ୍ରଣୟ) ଇତ୍ୟାଦି ।

ମତେ ସେଇଠି ସେ କହିଲେ—

"ଆଜି ଗୋଟାଏ ଅମେରିକାନ୍ ମାଗାଜିନ୍‌ରୁ ମୁଁ ପଢ଼ିଛି, ପୁରୁଷ ଓ ସ୍ତ୍ରୀର କେଶରାଶିରୁ ଉତ୍କୃଷ୍ଟ ବିସ୍କୁଟ ଓ ପାଉରୁଟି ତିଆରି ହୋଇ ପାରୁଛି । ତେଣୁ କେନ୍ଦ୍ରରୁ ସରକାର ତଥା ମହତାବ ସରକାର (ଓଡ଼ିଶା ସରକାର ସେ କହନ୍ତି ନାହିଁ, କାରଣ ବ୍ୟକ୍ତି-ବିଶେଷର ନାମ ଧରିଲେ ଯେ ବ୍ୟକ୍ତିତ୍ୱର ପରିସ୍ଫୁରଣ ହୁଏ, ତାହା 'ଓଡ଼ିଶା' ବା 'ଭାରତ' କହିବା ଦ୍ୱାରା ପ୍ରକଟିତ ହେବ ନାହିଁ) ନାପିତମାନଙ୍କଦ୍ୱାରା କେଶ ସଂଗ୍ରହାଳୟ ସ୍ଥାପନ କରି ସେଥିରୁ ବିସ୍କୁଟ ଓ ପାଉରୁଟି ଅମଦାନୀ କରି ଦେଶକୁ ଖାଦ୍ୟ ସଙ୍କଟରୁ ରକ୍ଷା କରନ୍ତୁ ।"

"—ବାବୁ କିଛି ଖାଇନି; କିଛି ଦିଅ ବାବୁ, ଭଗବାନ ଭଲ କରିବେ ।"

ବଡ଼ ପିଲାଟି ତୁଣ୍ଡରୁ ଏ କଥା ବାହାରିଛି, ସାନ ପିଲା କନାଖଣ୍ଡେ ଦେଖାଇ ଭିକ୍ଷା ମାଗୁଛି ।

ବିଜ୍ଞାନ ଅଧ୍ୟାପକ କେଶସଂଗ୍ରହ ବ୍ୟବସ୍ଥାରୁ ଏପରି ଦାନ ଦାକ୍ଷିଣ୍ୟ ଦେଖାଇବା ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ତା ପରେ

ଦୁଇ ଭିକ୍ଷୁ ବାଳକଙ୍କର ମୁଣ୍ଡରେ କେଶର ଚିହ୍ନବର୍ଣ୍ଣ ବି ନାହିଁ । ରୋଗ ଓ ଖାଦ୍ୟାଭାବ, ଅଧ୍ୟାପକଙ୍କର କେଶସଂଗ୍ରହ ବ୍ୟବସ୍ଥାକୁ ଅଗରୁ କାର୍ଯ୍ୟକାରୀ କରିଦେଇଛି ।

ଅଧ୍ୟାପକ ଆରମ୍ଭ କଲେ—"ହୋପ୍‌ଲେସ, ଏମାନଙ୍କ ଯୋଗୁ ଦେଶ କ୍ରମେ ଅବନତି ଆଡ଼କୁ ଯାଉଛି । ଆପଣ ଜାଣନ୍ତି, ଆମେରିକାରେ ଭିକ୍ଷୁକ ସମସ୍ୟା ନାହିଁ । ସମସ୍ତେ କର୍ମଠ, ଉପାର୍ଜନ-କ୍ଷମ । ଏମାନଙ୍କୁ କିଛି ଦେବା ଅର୍ଥ ଦେଶର ଉନ୍ନତି ଉପରେ କୁଠାରାଘାତ କରିବା ।"

ଅଧ୍ୟାପକଙ୍କଠାରୁ ନାସ୍ତିବାଣୀ ଶୁଣି ଭିଖାରୀ ଦୁଇଟି ମଥେ ଗୁହିଁଲେ । କାରଣ ଅଧ୍ୟାପକଙ୍କର ବିମୁଖଭାବ ତାଙ୍କର ଆଶା ଉପରେ କୁଠାରାଘାତ କରି ସାରିଥିଲା ।

ପାଖ ପିଜୁଳି ଦୋକାନୀକୁ ଅଠଣିଟାଏ ଭଙ୍ଗେଇବାକୁ ଦେଇ ସେଥିରୁ ଦୁଇଅଣା ଦୁହିଙ୍କୁ ମୁଁ ଦେଇଦେଲି ।

ସମୟ ହୋଇଥିଲା । ବସ୍‌କୁ ଆସିଲା । ଅଧ୍ୟାପକ ବନ୍ଧୁ ବ୍ରାହ୍ମଣ୍ୟ ଦେଖି ଅନ୍ୟ ବସ୍‌ରେ ବସିଲେ ।

ପର ବିଶ୍ରାମସ୍ଥଳ ହେଉଛି ଅନୁଗୁଳ । ଯାନରୁ ଓହ୍ଲାଇ ମୁଁ ଦେଖିଲି, ଅଭ୍ରୁ ଝାଉଁଳିବା ଭାବରେ ରହିଛି । ଦେବାନ୍ ବାବୁଙ୍କର ଉପଭୋଗ ପାଇଁ ଖାଦ୍ୟସାମଗ୍ରୀ ପ୍ରସ୍ତୁତ ରହିଥିଲେ ବି ସେହି ଗ୍ରକୋଦ୍ୟାନର ଜଳ ଅଭାବରୁ ତାହା ଏ ପର୍ଯ୍ୟନ୍ତ ବ୍ୟବହୃତ ହୋଇନାହିଁ ।

ସ୍ୱାସ୍ଥ୍ୟ ବିଷୟରେ ଏତେ ସତର୍କ ଥିବା ଦେବାନ୍ ବାବୁଙ୍କୁ ମୁଁ ପ୍ରଶଂସା ନ କରି ରହିପାରିଲି ନାହିଁ । କୌଣସି ବନ୍ଧୁଙ୍କ ଘରୁ ଭଲ ପାଣି ମଗାଇ ତାଙ୍କୁ ବ୍ୟବହାର କରିବାକୁ କହିଲି । ଅଭ୍ରୁ

ଯେପରି ପ୍ରାଣ ଫେରି ପାଇଛି । ଅନିଚ୍ଛାସତ୍ତ୍ୱେ ଦେବାନ୍ ବାବୁ ତାହା ଗ୍ରହଣ କରିବାକୁ ରାଜି ହେଲେ ।

ନାଲି ରାସ୍ତା ଉପରେ ମୁଁ ଟିକିଏ ପାଦ ଖେଳେଇ ଆଣୁଛି, ଶୁଣିଲି ସେହି ଚିରଶ୍ରୁତ କାକୁବାଣି—

'ଦିଅ ବାବୁ, ଅନ୍ଧୁଣୀ, ପୁଅ ଗେରସ୍ତ କେହି ନାହାନ୍ତି, ଦିଅ ବାବୁ ପଇସା ଅଧଲାଏ । ଗରିବର ଦୁଃଖ ବୁଝ ।'

ମୁଁ ଫେରି ଚାହିଁଲି । ଗୋଟିଏ ଅନ୍ଧୁଣୀ ବୁଢ଼ୀ ବିଖ୍ୟାତ ତେଲିବାଜ ବ୍ୟବସାୟୀ ମାରୁଆଡ଼ିଙ୍କୁ ହାତ ପତେଇ ନିଜର ଦୁଃଖ ଜଣାଉଛି ।

"—ହଟ୍‌ଯାଓ, କୁଛ୍ ନେହିଁ, ଉଡ଼ିଶ୍ୟା କାଙ୍ଗାଲ ଦେଶ୍ ।"

ଶେଠଜୀ ଏତିକ କହି କମର ଉପର ଲୁଗାକୁ ଆଉରି ଭିଡ଼ିରେ ବାନ୍ଧିଦେଲେ ।

ଅନ୍ଧୁଣୀକୁ ଅଣିଏ ପଇସା ବଢ଼େଇ ଦେଇ ମୁଁ ଶେଠଜୀଙ୍କୁ ଦଣ୍ଡେ ଚାହିଁଲି । ମୋର ଏ ଦାନକୁ ଗୋଟାଏ ତାଚ୍ଛଲ୍ୟମିଶ୍ରିତ ଚାହାଣିରେ କରୁଣାସିକ୍ତ କରି ଦୁଇ ରୁକ୍ଷଅଧର ଉପରେ ଟିକିଏ ହସ ଖେଳେଇଆଣି ଶେଠଜୀ ଆବୃତ୍ତି କଲେ—ଉଡ଼ିଶ୍ୟା କାଙ୍ଗାଲ ଦେଶ୍ ।

ଟିକିଏ ଦୂରକୁ ଖଣ୍ଡିଏ ଓଡ଼ିଆ ସମ୍ବାଦପତ୍ର ଖୋଲି ଜଣେ ଟୋପିଧାରୀ ଝୁଲିହସ୍ତ କଂଗ୍ରେସକର୍ମୀ ମହାତ୍ମା ଗାନ୍ଧିଙ୍କର ପ୍ରାୟୋପବେଶନର ବାର୍ତ୍ତା ବୋଧହୁଏ ପଢ଼ୁଥିଲେ । ଜଣାଯାଉଥିଲା, ଯେପରି ଅଭିନିବେଶ ଟିକିଏ ବେଶୀ ହୋଇ ଯାଇଛି ।

'ବାବୁ, ଅନ୍ଧୁଣୀ ବୁଢ଼ୀ, କଅଣ ଦିଅ ବାବୁ ।'

ଥରେ ନୁହେଁ, ବହୁ ଥର ଏ ମର୍ମସିକ୍ତ ବାଣୀ କଂଗ୍ରେସକର୍ମୀଙ୍କର କାନରେ ପଡ଼ୁଛି । କିନ୍ତୁ ମହାତ୍ମାଙ୍କର ଅନଶନ ସମ୍ବାଦରେ

ତାଙ୍କର ମତ ଏତେ ବାତୁଳ ହୋଇଛନ୍ତି ଯେ, ବୁଢ଼ୀର ବିଳାପ କାନକୁ ଯାଉନାହିଁ । କେତେବେଳକୁ ବିରକ୍ତିରେ ସେ କହିଲେ—

'ଉଃ, କେତେ ବକ୍ ବକ୍ କରୁଛୁ । ରହ, ବାଡ଼ିଟା ଲଗାଏଁ । କାଲେ ବୁଢ଼ୀ, ନିତ ଯଦି ତୁ ଇମିତି ଭିଖ ମାଗିବୁ, ତେବେ ସମାଜର ସଂସ୍ଥା ରହିବ କିପରି ?' ଏହା କହି କର୍ମୀ ଜଣକ ମୋ ଉପରେ ଦୃଷ୍ଟିପାତ କରି 'ସମାଜ-ସଂସ୍ଥା' ଭଳି ଗୋଟାଏ ରାଜନୀତିକ ଶବ୍ଦ ଶୁଣାଇ ପାରିଛନ୍ତି ବୋଲି ଆତ୍ମତୃପ୍ତିରେ ଟିକିଏ ହସିଲେ ।

ବୁଢ଼ୀ ସେଠାରୁ ଶୂନ୍ୟହସ୍ତରେ ଫେରି ଆସିଲା । କର୍ମୀଙ୍କର ମୁହଁରେ ବାଡ଼ିଟା ବସ୍ ରାସ୍ତାର ମୋଡ଼ ବୁଲିବା ପର୍ଯ୍ୟନ୍ତ ଅଗ୍ନିକଣା ଝରାଉଥାଏ ।

ଟ୍ରେନର ପ୍ରକୋଷ୍ଠ ଭିତରେ ଦେବାନ୍‌ଠାରୁ ଆରମ୍ଭ କରି ସେହି କଂଗ୍ରେସକର୍ମୀ ପର୍ଯ୍ୟନ୍ତ ମୋର ଯାତ୍ରାସଙ୍ଗୀ ରହିଛନ୍ତି ।

ଶୀତ ସନ୍ଧ୍ୟାରେ ଶୀତଳ ବାୟୁ କ୍ରମେ ସୁଶୀତଳ ହୋଇଯାଉଛି ।

ଟ୍ରେନର ଗତି କମିଆସିଲା ।

ବିଜ୍ଞାନ ଅଧ୍ୟାପକ ସେତେବେଳକୁ ସିଗାରେଟରେ ନିଆଁ ଧରାଇଛନ୍ତି । ଦେବାନ୍ ବାବୁ ପାଇପରେ ଅଭ୍ୟସ୍ତ । ତେଣୁ ତାଙ୍କ ପାଇପରୁ ସ୍ଫୁଲିଙ୍ଗ ବାହାରୁଛି । କର୍ମୀଙ୍କର ବାଡ଼ି ଲୋଭ ନାହିଁ। ଗୋଟାକ ପରେ ଗୋଟାଏ ଗୁଳିଛି । ତୈଳବୀଜ ବ୍ୟବସାୟୀ ଶେଠଜୀ ଚିଲମରେ ଟାଇନ୍ ଦେଇ ଝୁଁ ଝୁଁ କରି ଟାଣି ଯାଉଛନ୍ତି।

ଅନ୍ଧକାରର ମସୀ ତଳେ ମୋର ପ୍ରଲୁବ୍ଧ ଆତ୍ମା ଆଲୋକ ଖୋଜୁଛି । ମୁଁ କୃଷ୍ଣା ପ୍ରକୃତିକୁ ଚାହିଁ ରହିଥିଲି । ଦିଗ୍‌ବଳୟ ତଳେ ଗୋଟିଏ ନକ୍ଷତ୍ର ଜଳୁଥିଲା ।

ଷ୍ଟେସନ···

ସ୍ୱାଭାବିକ କୋଳାହଳ ।

ଦୁଇ ମୂହୁର୍ତ୍ତି ଭିତରେ ଷ୍ଟେସନର କୋଳାହଳ ଯେପରି ସ୍ଥିର ହୋଇ ଆସିଲା ।

କିଏ ମ ? କିଏ ସେ ? କ୍ଷୀଣ କଣ୍ଠରେ କିଏ କହିଲା—'ଅଗ୍ରଜେ' ! ସେ କଣ୍ଠ ପୁଣି ସ୍ପଷ୍ଟ ଶୁଣାଗଲା—'ଅଗ୍ରଜ ମହାଶୟ !' ସେ ସ୍ପଷ୍ଟ କଣ୍ଠ ପୁଣି ସ୍ପଷ୍ଟତର ଶୁଣାଗଲା । "ଅଗ୍ରଜ ହରିହର" ।

ଅନ୍ୟ ଜଣେ କିଏ କହିଲେ—'ଋଷିପ୍ରତିମ' ।

ମୁଣ୍ଡିଆ—

ପ୍ରଣାମ—

ମୁଣ୍ଡିଆ—

ଜୁହାର—

ପାଦଧୂଳି ଦିଅନ୍ତୁ—

ଉତ୍ତର ଶୁଭିଲା—ହଜ ବାବା, ଭଲ ଅଛ ? ଢେଙ୍କାନାଳରେ କାମ ଥିଲା । ଯାଇଥିଲି; ଆନ୍ଦୋଳନରୁ କ୍ଷାନ୍ତ ରହିବାକୁ କହିଲି; ମୋ କଥା ପିଲାଏ ଶୁଣିଛନ୍ତି । ସେହି ମୋର ଶାନ୍ତି । ହଁ, ସତ୍ୟବାଦୀରେ ବ୍ରାହ୍ମଣେ ହାଲ କଲେ । ମୋ ଉପରକୁ ସମସ୍ତେ ଖପ୍ପା । ହଜ ବାବା, ଭଲ ଅଛ ? ସୂତା କାଟୁଛ ତ ? ଗୀତା ପଢ଼ିବ । ଯେ ଯେଉଁ ମାଟରେ ଯାଅ, ସେ ବୁଢ଼ା ଜନନାୟକଙ୍କୁ ମନରେ ରଖିଥିବ । କେଉଁ ଡବାରେ ବସିବା ? ଏଇଠି ବସିଗଲେ ହେବ । ସାରଙ୍ଗ, ତମେ ଟିକେ ଅଣ ।

ଉତ୍କଳର ଶିର ପରିଚିତ ସେହି ପୁରୁଷଙ୍କୁ ନ ଚିହ୍ନେ କିଏ ? ହାତରେ ଖଣ୍ଡିଏମାତ୍ର ଶଯ୍ୟାସନ ଝୁଲାଇ କାନ୍ଧରେ ଖଣ୍ଡିଏ ମୁଣା ରଖି ସେ ଉଠି ଆସିଲେ ଆମର ଡବା ଭିତରକୁ ।

ପ୍ରସନ୍ନ କାନ୍ତି, ଅନାଡ଼ମ୍ବର ଶୌର୍ଯ୍ୟ, ମୁଖରେ ସେହି ସାତ୍ତ୍ୱିକ ହସ ।।

"—ଅରେ ବାବା, ଏଇଠି ସବୁ ବସିଛ, ହଉ ବସ ବସ ।"

ଦେବାନଙ୍କ ପାଇପ ମୁହଁରୁ ଖସି ପଡ଼ିଅଡ଼ିକୁ ଅଜକ ଯାଉଛି । ଅଧ୍ୟାପକଙ୍କର ସିଗାରେଟ୍ ଝିରକା ବାଟେ ତଳେ ପଡ଼ିଲାଣି । ମାଲୁଅଡ଼ ଚଲମଟାକୁ ତଳେ ଗଡ଼େଇ ଦେଇଛନ୍ତି । ବଗୁରା କର୍ମୀଙ୍କର ଅବସ୍ଥା ସବୁଠୁଁ ଉଦ୍‌ବେଗଜନକ । ସେ କିଛିକ୍ଷଣ ନିଶ୍ଚଳ ହୋଇ ରହିଗଲେ । ତେଣୁ ତାଙ୍କର ଅଧରରେ ଅମାନିଆ ବାଡ଼ଟା ଲଗି ରହିଥିଲା ।

'କଓ ଭ୍ରମରଙ୍କର, ଧୂଆଁ ଅଭ୍ୟାସ କଲ କାହିଁକି ?'

ମୁଁ ଦୂରରୁ ଦେଖୁଥାଏ, କର୍ମୀଙ୍କର ସମାଜ ସଂସ୍ଥା ଏତିକାରେ ଭାଙ୍ଗି ପଡ଼ିଲା । ସେ ଅସ୍ତବ୍ୟସ୍ତ ହୋଇ 'ଚ' କରି ଗୋଟାଏ ମୁଣ୍ଡିଆ ମାରିଦେଲେ । ବାଙ୍କାନ ଅଧ୍ୟାପକ ହଠାତ୍ ଆରମ୍ଭ କରିଦେଲେ— "ଆଜ୍ଞା, ଭାରତ କଅଣ ମୌଳିକ ଶିକ୍ଷା ଯୋଜନାକୁ ଶୀଘ୍ର ଗ୍ରହଣ କରି ପାରିବ ?"

—'ଦାତାମାନେ, ଏ ଅନ୍ଧକୁ ଦୟାକର । ନିଅଣ୍ଟିକି ମାଗୁଛି; ପଇସା ଅଧଲାଏ ଦିଅ । ଭଗବାନ ଦୟା କରିବେ । ଦିଅ ବାବା ।'

ଅନ୍ଧ ଗୀତ ଧରିଛି ।

ଛଳ ଛଳ ଆଖିରେ କଳ୍ପଲର ଋଷି ବାରଣ କଲେ—"ନାହିଁ ବାବା, ଗୀତ ବୋଲ ନାହିଁ, କଷ୍ଟ ହେବ ।" 'ହେଇଟି ନିଅ' କହି ଅଗ୍ନିର୍ଫେ ଦୋଅଣିଟିଏ ଅନ୍ଧକୁ ବଢ଼ାଇ ଦେଲେ ।

ସାଙ୍ଗେ ସାଙ୍ଗେ ଦେବାନ୍ କହିଲେ—'ନେ, ନୋଟ ଟାଏ, ଦେଖି ରଖ । ଅଧ୍ୟାପକ ମନିବ୍ୟାଗରୁ ଅଣ୍ଟାଳି ଅଣିଲେ ଟଙ୍କାଟିଏ, କହିଲେ—'ନେ ଟଙ୍କାଟା, ସାଇତ କରି ରଖ, ଅହା ଏମାନେ ଦରିଦ୍ରନାରାୟଣ । ଅମେରିକାରେ ଏମାନଙ୍କୁ ସାହାଯ୍ୟ କରିବାପାଇଁ ବହୁ ପ୍ରକାରର ପାଣ୍ଠି ରହିଛି ।' ମାଲୁଅଡ଼ ଖୋସଣୀ ଫିଟାଇ

କହିଲେ—'ଲେଖଁ, ଆଠ ଅନା, ହାମରି ଗୋଦାମକୁ ଗଇଲେ କଚ୍ଛୁ ବେଶୀ ମିଳାବ ରେ ।' ଶେଷରେ କମୀ ପକେଟରୁ ବାହାର କଲେ ଗୁରିଅଣା ପଇସା, କହିଲେ—'ନେ ବାବା, ନେ, ସମାଜର ସଂସ୍ଥା ରଖିବାକୁ ହେଲେ ତୁମକୁହିଁ ଆଗ ଦେଖିବାକୁ ହେବ ।'

ଏ ଭିତରେ ଦୁଇଟି ଷ୍ଟେସନ ପାରହୋଇଯାଇଛି । ମୁଁ ଚାଟ-ପ୍ରତିମା ଭଳି ବସି ରହିଥାଏ । ଦେବାନ୍ ସାହେବ ପାଖକୁ ଆସି ମଟେ ହଲେଇ ଦେଇ କହିଲେ—'ଆପଣ କଅଣ ଦେଖୁଛନ୍ତି ?'

ମୁଁ ଉତ୍ତର ଦେଲି—"ପ୍ରକୃତି ।"ସେ ହସିଲେ; କହିଲେ—"ଅନ୍ଧକୁ କଚ୍ଛୁ ଦେଲେ ନା ?" ମୁଁ ଉତ୍ତର ଦେଲି "—ନା ।" ଦେବାନ୍ କହିଲେ, "କାହୁଁ ସବୁଠାରେ ମୁଁ ଦେଖିଲି ଆପଣ ଦେଇ ଅସିଛନ୍ତି ।"

ମୁଁ କହିଲି—"ହଁ, କାହୁଁ ଏଠାରେ ପାରିଲି ନାହିଁ ।"

"—କାରଣ ?"

"ଅଗ୍ନିଙ୍କେ ଥିଲେ ବୋଲି···"ସେ ମୋର କାନ୍ଧ ଉପରେ ସ୍ନେହରେ ହାତ ରଖି କହିଲେ—

"ମୁଁ ଶିଖିଲି ।"

ମୁଁ ପୁଣି କହିଲି—"ମୋର ସେହି ଏକା ଉତ୍ତର; ଅଗ୍ନିଙ୍କେ ଥିଲେ ବୋଲି····"

ଦେବାନ୍‌ବାବୁ ଏଥର ମତେ ବେଶ୍ ଭଲ୍ ଭାବରେ ଗୁହିଁଲେ, ଅଉ କହିଲେ—

"ସତେ, ଅପଣ କବଭାବର ଲୋକ···।"

ଟ୍ରେନ ଗୁଲିଥାଏ । ଦୂର ଚକ୍ରବାଳ ତଳେ ଏକାକୀ ସେହି ନକ୍ଷତ୍ରଟି ଅଦ୍ଭୁତ ଦୀପ୍ତ ଦେଖାଯାଉଥାଏ ।

"ମୁଁ ମୁହଁ ଫେରାଇ ଦେଖିଲି, ଅଭ୍ର କଅଣ ଲେଖୁଚ—ତାର ଅଙ୍କ ଉପରେ ତାହାର ଡାଏରିଟି ଖୋଲା ପଡ଼ିଥିଲା ।

---

# ମରଦ୍ କା ବାତ୍

ଶ୍ରୀ କାହ୍ନୁଚରଣ ମହାନ୍ତି

( ୧ )

ନର-ରାକ୍ଷସ ପଡ଼ିଲେ ବି ଧରାଯାଏ ନାହିଁ; କାରଣ, ରାଜ-ଯୋଟକ । ପାଠ କହିଲା—ସମ ରାଶୀ ଚ ଧର୍ମବୃଦ୍ଧି······

ପଣ୍ଡିତେ ଦୁଇଟି ଟଙ୍କା ଅଣ୍ଟାରେ ଖୋସିଲେ । କଲ୍ୟାଣ କରି ବିଦାୟ ନେଲେ । କହିଗଲେ ଶୁଭସ୍ୟ ଶୀଘ୍ରଂ ····· ।

ନନ୍ଦ କହିଲା, ଅରେ ଗୋବିନ୍ଦ, ଏ ଗୁଡ଼ା ସବୁ ପୁରୁଣା କଥା । ଜାତକ ମୁଣ୍ଡାମୁଣ୍ଡି ଗୋଟାଏ କ'ଣ ରେ ? ଜାତକ ତ ସମସ୍ତଙ୍କର ମୁଣ୍ଡା ହେଉଛି । ଆପଦ ବିପଦ କ'ଣ ଅସୁ ନାହିଁ ? ଏ ଗୁଡ଼ା ସବୁ ବାଜେ କଥା । ଯାହା ହେଉ, ପଣ୍ଡିତେ ତ କହିଗଲେ ଅପତ୍ତି ନାହିଁ, ତୋର ଏଥର ବାଧା ଦେବା ଉଚିତ ନୁହେଁ । କନ୍ୟାଟି ମନ୍ଦ ସୁନ୍ଦର, ପାଠ ଯଦି ପଢ଼ୁଛି, ପକ୍କା ଜବାବ ଦେଇ ଦେ ।

ଗୋବିନ୍ଦ କହିଲା, ମନର ସନ୍ଦେହ ତ ତୁଟିଲା; ଏଥର ମୁଁ ଦାଦାଙ୍କୁ ଲେଖିଦିଏଁ । ସେ ଜବାବ ଦେଇନ୍ତୁ ।

ନନ୍ଦ ଓ ଗୋବିନ୍ଦ ଦୁଇ ବନ୍ଧୁ । ଦିହେଁ ଦୁଇଟି ଅଫିସର କିରାଣୀ । ଗୋଟିଏ ମେସ୍‌ରେ ଥାନ୍ତି । ଦିହେଁ ଅବିବାହିତ ।

ଗୋବିନ୍ଦ ସେଇଦିନ ତାର ଦାଦାଙ୍କ ପାଖକୁ ଚିଠି ଲେଖି ଦେଲା, ପଣ୍ଡିତେ କହିଲେ, କିଛି ଅପତ୍ତି ନାହିଁ ।

ଗୋବିନ୍ଦ ସ୍ୱପ୍ନ ବି ଦେଖିଲା—ସୁନ୍ଦର । ପାଠ ପଢ଼ିଛି । ଭଲ ସ୍ୱାସ୍ଥ୍ୟ । ବେଶ୍ କାମିକା । ଅପ୍-ଟୁ-ଡେଟ୍ । ଗୋବିନ୍ଦ ସ୍ୱପ୍ନ ଦେଖିଲା—କେତେ ଛବି ବାହାର କେତେ ରୂପ । ତା'ର ଭିତରୁ ଜଣକ ପତ୍ନୀ ସେ ହୋଇଥିବେ ତ— । ସୁନ୍ଦର ନାମଟି—ରମା ।

ଗୋବିନ୍ଦକୁ ପଚିଶ ବର୍ଷ । ବାହା ହେବାକୁ ଉତ୍ତଳ ବାଙ୍କଳ ।

ପ୍ରସ୍ତାବ ଅଟେଇଲେ । ମହାପ୍ରସାଦ ନନ୍ଦଙ୍କର ଧନ ବି ସ୍ଥିର ହୋଇଗଲା । ଗୋବିନ୍ଦର ବାପ ନାହାନ୍ତି । ମା' ଗାଁରେ ।

( ୨ )

ଗୋକୁଳ ତା'ର ମାଉସୀ ପୁଅ ଭାଇ । କଲେଜରେ ବି. ଏ. ପଢ଼େ । ଗୋକୁଳର ବଡ଼ ଭଉଣୀ ରମାର ଭାଉଜ । ମହାପ୍ରସାଦ ନନ୍ଦଙ୍କ ମୋଟେ ଧାଁଧାନ ଅଛି । ଗୋକୁଳ ଅସିଥିଲା ଗୋବିନ୍ଦ ବସାକୁ । ନନ୍ଦ ନ ଥାଏ । ସଞ୍ଜବେଳ । ଗୋକୁଳ କହିଲା, ମତେ ଥରେ ପଚାରିଲ ନାହିଁ ଗୋବିନ୍ଦ ଭାଇ ?

ଗୋବିନ୍ଦର ମନ ପାପ ଛୁଇଁଲା । ପଚାରିଲା, କ'ଣ କି ?

ସବୁ ତ ସ୍ଥିର ହୋଇଗଲାଣି ।

ନନ୍ଦଙ୍କ ତ ହୋଇ ନାହିଁ—

ଜବାବ୍ ଦିଅ ତ ସରିଛି ।

କ'ଣ କହୁଛୁ ତୁ ଗୋକୁଳ ? ଭବିଷ୍ୟତଟା ବଡ଼ ନା ଜବାବଟା ବଡ଼ ରେ ? ତତେ ନ ପଚାରି ବଡ଼ ଭୁଲ କରିଛି । କହ—

ଗୋବିନ୍ଦ ଭାଇ, ବଡ଼ ଗୁପ୍ତ କଥା, । ଜାଣ ତ ସେ ମୋ' ଅପାର ନଣନ୍ଦ ! କଥାଟା ପ୍ରକାଶ ହେଲେ—

ପ୍ରକାଶ ହେବ କାହିଁକି ?

ମୋଟ ଉପରେ ପାନ ସେତେ ଭଲ ନୁହେଁ ।

ଅର୍ଥାତ୍—

ଟିକେ ଫାଜିଲ୍ ।

ଗୋକୁଳ ବିଦାୟ ନେଲେ । ରାତରେ ଗୋବିନ୍ଦକୁ ଆଉ ନିଦ ନାହିଁ । ରମା ଫାଜିଲ୍ । ସେ ଭଲ ନୁହେ । ଗୋକୁଳ ତାକୁ ପିଲଦିନୁ ଦେଖୁଛି । କାହିଁକି ସେ ମିଛ କହିବ ? ବିଶେଷତଃ ତା' ଭଉଣୀର ନଣନ୍ଦ ନାମରେ ? ଦୁନିଆରେ କଣ କନ୍ୟାର ଅଭାବ ? ପ୍ରସ୍ତାବ ଭାଙ୍ଗିଯାଉ ।

ପ୍ରସ୍ତାବ ସ୍ଥଗିତ ରହିଲା—ନର-ରାକ୍ଷସ । ଭଲ କରି ପରୀକ୍ଷା ନ କରି ସମ୍ବନ୍ଧ ସ୍ଥାପିବା ଉଚିତ ନୁହେ ।

( ୩ )

ନଗେନ୍ଦ୍ର ବି ଗୋବିନ୍ଦର ବନ୍ଧୁ । ସେ ଆଉ ଗୋଟିଏ ଅଫିସ୍‌ର କିରାଣୀ । ବୟସ ହେବ ତିରିଶି । ଅନେକ ଦିନୁ ବିବାହିତ । ତା'ର ଘର ଆଗରେ ହରିବାବୁଙ୍କ ଘର । ହରିବାବୁ ବି କିରାଣୀ ।

ନଗେନ୍ ଆଣିଲା ହରିବାବୁଙ୍କ ଝିଅ ଲଳିତା ସମ୍ବନ୍ଧରେ ପ୍ରସ୍ତାବ । ଜାତକ ଶୁଝିଲା ଭଲ । କୌଣସି ଦୋଷ ନାହିଁ । ଝିଅଟି କୁଆଡ଼େ ଗୋଟିଏ ଗୁଡ଼ିଜଲରେ ଗଢ଼ା । ଏମିତି ଗୁଣର ଝିଅ ଆଉ ଦୁନିଆରେ ଥିବେ କି ନାହିଁ ।

ଗୋବିନ୍ଦ ଛପି ଛପି ଯାଇଁ ଦେଖିଲା ଲଳିତାକୁ । ଥରେ ନୁହେଁ, ଦୁଇ ତିନି ଥର । ଅନ୍ଧାରିଆ ସନ୍ଧ୍ୟାରେ—ଝରକା ବାହାରେ —ରାସ୍ତା ଉପରୁ—ଅତି ଗୋପନରେ—ଚୋର ପରି—ଛପି ଛପି—

ସେ ମୁଗ୍‌ଧ ହେଲା । ଛବି ବହି ଅଡ଼େଇ ଦେଲା । ସପନର ଜୀବନ୍ତ ଅବଲମ୍ବନ ସେ ପାଇଛି—ଯିଏ ହେବ ତାର ଚିରଦିନ—

ଜବାବ ସେ ଦେଲା । ନଗେନ୍ଦ୍ର କହିଲା, ହରିବାବୁଙ୍କର ଷୋଳପଣ ଇଚ୍ଛା । ହେଲେ ଝିଅର ମାମୁଁ ବିଦେଶରେ ଅଛନ୍ତି । ଲଳିତାକୁ ଝିଅ ପରି ସେ ଭଲ ପାଆନ୍ତି । ତାଙ୍କର ମତାମତ ଆସିଲେ ଜବାବ୍ ପକ୍‌କା ହେବ ।

ହେଉ ।

( ୪ )

ମାସେ କଟିଲା । ହରିବାବୁଙ୍କ ଜବାବ୍ ପକ୍‌କା ହେଲା ନାହିଁ । ଗୋବିନ୍ଦ ଛଟପଟ । ଦାଦି ବି ବିରକ୍ତ ହେଲେଣି । ଭଲ ପାଣଟିଏ ଦେଖି ବାହାଘର କରିବାକୁ ମା' ବ୍ୟସ୍ତ କରୁଛନ୍ତି । ରମାର ବାପା ଚିଠି ଲେଖିଛନ୍ତି—ହଁ କି ନାହିଁ କହି ଦିଅ । ଟାଳଟୁଳ କରି କେତେଦିନ ଗଡ଼େଇବ ?

ନଗେନ୍ଦ୍ର କହୁଛି, ହରିବାବୁ ତ ଚିଠି ଲେଖିଛନ୍ତି ଲଳିତାର ମାମୁଁ ପାଖକୁ, ଶୀଘ୍ର ଉତ୍ତର ଆସିବ ଯେ—

ନନ୍ଦ କହିଲା, ଅରେ ଗୋବିନ୍ଦ, ଲଳିତା ସୁନ୍ଦର ବୋଲି କ'ଣ ତୁ ତୋର ନିଜତ୍ୱ ଭୁଲି ଖାଲି ଦଉଡ଼ ମାରୁଥିବୁ । ଆଉ ନଗେନ୍ଦ୍ରର ଗୋଡ଼ ଘଷୁଥିବୁ ? ଏଇ ମାସ ପଚିଶ ତାରିଖ ଅଗରୁ ଯଦି ହରିବାବୁ ପକ୍‌କା ଜବାବ ନ ଦିଅନ୍ତି, ଲଳିତା ବିଷୟରେ ସମ୍ବନ୍ଧ ଭାଙ୍ଗୁ । କହି ଦେ ନଗେନ୍ଦ୍ର ବାବୁଙ୍କୁ ଥରେ ।

ଗୋବିନ୍ଦ ନନ୍ଦର ଉପଦେଶ ମାନିଲା ।

( ୫ )

ଛରଶ ତାରଖ ହେଲ । ନଗେନ୍ଦ୍ର ବାବୁଙ୍କର ଦେଖା ନାହିଁ ।

ନନ୍ଦ କହିଲା, ଲଳିତା କଥା ଭୁଲିଯା । ସେମାନେ ଧନୀ । ତୁ ଗରିବ । ନଗେନ୍ଦ୍ର ସିନା କଥା ପକେଇଥିଲେ । ବୋଧହୁଏ ହରବାବୁଙ୍କ ଇଚ୍ଛା ନାହିଁ । ଉମାର ବାପାଙ୍କୁ ପକ୍କା ଜବାବଦେବାକୁ ତୋ' ଦାଦାଙ୍କୁ କେଣି ଦେ । ବାହାଘରର ବ୍ୟବସ୍ଥା କରନ୍ତୁ । ଡେରି କରି କିଛି ଲାଭ ନାହିଁ ।

କାନ୍ତୁ—

ନର-ରାକ୍ଷସ କଥା ଭାବୁଛୁ ? ରାଜ-ଯୋଟକ ଯେ—

ପାନ୍ନ ସେତେ ଭଲ ନୁହେଁ—

କାହିଁକି ?

ବଡ଼ ପାଜିଲ—

ଅଜ, ତୁ କ'ଣ କମ୍ ? ଯିଏ ତତେ ଏ ସମ୍ବାଦ ଦେଲା ସେ ଯଦି ନିଜେ ପାଜିଲ୍ ହୋଇଥାଏ ? ତା'ର ଯଦି ଅନ୍ୟ କିଛି ଉଦ୍ଦେଶ୍ୟ ଥାଏ ?

ଗୋବିନ୍ଦ ଭାବିଲା ସତେ ତ । ଗୋକୁଳ ତ ଆଗରୁ କେବେ ଆସି ନ ଥିଲା କି ସେଇ ଦିନଠୁ ଆଉ କେବେ ଆସି ନାହିଁ !—ହୁଁ, ଜଣାଗଲା ଯେ ।

( ୬ )

ଗୋବିନ୍ଦ ପରଦିନ ତା ଦାଦାଙ୍କ ପାଖକୁ ଚିଠି କେଣି ଜଣାଇଲା—ଭଲକରି କାତକ ଯୁଝାଇଲ୍ । ପଣ୍ଡିତମାନେ କହୁଛନ୍ତି— ନର-ରାକ୍ଷସରେ ବାଧା ନାହିଁ । ରାଜଯୋଟକ ହେଲେ ଆଉ କିଛି ଧର୍ ନାହିଁ ।

କିନ୍ତୁ ଗୋବିନ୍ଦର ମନ ଖରାପ । ସଞ୍ଜବେଳେ ଗଲା ସିନେମା ଦେଖିବାକୁ—ମନ ଭୁଲେଇବାକୁ, ସିନେମା ଫେରନ୍ତ ଦେଖା ହେଲା ଲଳିତା ସାଙ୍ଗରେ । ପ୍ରଭାତ ସିନେମା ଆଗରେ ଆଉ କେତେ ଜଣ ସ୍ତ୍ରୀଲୋକଙ୍କ ପାଖରେ ସେ ଠିଆ ହୋଇଛି । କେହି ତ ତାକୁ ଚିହ୍ନନ୍ତି ନାହିଁ । ସେ କିନ୍ତୁ ଲଳିତାକୁ ଜାଣେ । କେତେଥର ଦୂରରୁ ଦେଖିଛି । ଲଳିତା ପ୍ରକୃତରେ ସୁନ୍ଦର ! ଅପ୍-ଟୁ-ଡେଟ୍ !

ଲଳିତା ସୁନ୍ଦର ଆଉ ରମା—ଯାହାକୁ ସେ କେବେ ଦେଖି ନାହିଁ—ସେତେ ଭଲ ନୁହେ ! ଠିକେ ଫାଜିଲ୍ ! ତା'ର ମନ ଖରାପ ହେଲା ।

( ୭ )

ପରଦିନ ଅଫିସରେ ଦାଦାଙ୍କ ଚିଠି ଖୋଲିଲା—ମହାପ୍ରସାଦ ନିବନ୍ଧ କାଲି ହେବ । ଖବର ପଠେଇଥିଲି । ସମ୍ବନ୍ଧ ଜବାବ୍ ଦେଇଛନ୍ତି । କାଲି ସକାଳ ବସ୍‌ରେ ସେମାନେ ସବୁ କଟକ ଆସିବେ । ମୁଁ ବି ଯାଉଛି । କଟକରେ ମହାପ୍ରସାଦ ନିବନ୍ଧ ହେବ ।

ନଗେନ୍ଦ୍ର ଆସିଲା ହସ ହସ ହୋଇ । ପକେଟରୁ ଖଣ୍ଡେ ଚିଠି କାଢ଼ି କହିଲା, ସବୁ ଠିକ୍ ହୋଇଗଲା । ପାଞ୍ଚ ତାରିଖରେ ମହାପ୍ରସାଦ ନିବନ୍ଧ । ପଚିଶ ତାରିଖରେ ବାହାଘର । ହରିବାବୁ ଏଇ ଚିଠି ତମ ଦାଦାଙ୍କ ପାଖକୁ ଲେଖିଛନ୍ତି । ଠିକଣାଟା ଦେଲେ ମୁଁ ଆଜି ପଠେଇ ଦେବି ।

ଗୋବିନ୍ଦ କାବା ହୋଇ ଚାହିଁ ରହିଲା ନଗେନ୍ଦ୍ରର ମୁହଁକୁ । ଠିକଣାଟା କ'ଣ ? ·

ଆଜି କ'ଣ ପଚିଶ ତାରିଖ ?

କୋଉଁଏ ତାରିଖରୁ ହରିବାବୁ ଏ ଚିଠି ମତେ ଦେଲେଣି । ଏତେ କାର୍ଯ୍ୟବ୍ୟସ୍ତ ଥିଲି ଯେ, ତମକୁ ଦେଖିବାକୁ ବେଳ ପାଇଲି ନାହିଁ ।

ଚାହିଁକି ? କଣ ହେଲା କି ?

ଗୋବିନ୍ଦ ସବୁକଥା କହିଲା । ନଗେନ୍ଦ୍ର କହିଲା ବେଦ ଉପରୁ ବର ବାହୁଡ଼ୁଛି, ଏ କଣ ହୋଇଛି କି ? ଏଇ ଚିଠି ସଙ୍ଗରେ ତୋ ଦାଦାଙ୍କ ପାଖକୁ ଚିଠି ଲେଖି—ସେ ସମ୍ବନ୍ଧଟା ଭାଙ୍ଗିଦେ । ଏମିତ କେତେ ହେଉଛି ନା—

ଅଫିସର ବୁଢ଼ା ଦପ୍ତରୀ ସରଫ ମିଆଁ ସବୁ ଶୁଣୁଥିଲା । ଠିଆ ହୋଇ ପାଚିଲା ଦାଢ଼ି ଅଉଁଶି କହିଲା, ସବୁ ଝିଅ ସମାନ ଅଛି । ଏଭି ଯେସା ଓଭି ତେସା । ଲେକିନ୍, ହାତୀକା ଦାନ୍ତ—ମରଦ୍ କା ବାତ—

ନଗେନ୍ଦ୍ର ମୁହଁକୁ ଚାହିଁ ରହିଲା । ହରିବାବୁଙ୍କ ଚିଠିଟି ଚିରି ଚିରି କରି ଫିଙ୍ଗିଦେଲା ।

---

# ପିତା ଓ ପୁତ୍ର

ଶ୍ରୀ ସୁରେନ୍ଦ୍ର ମହାନ୍ତି

ଶିଖର ଦେଶର ଏକ କ୍ଷୁଦ୍ର ଛିଦ୍ର ପଥରେ, ପ୍ରଭାତର ଆଲୋକରେ, ଅନ୍ଧକାର କାରାଗାର ସ୍ୱଳ୍ପ ଆଲୋକିତ ହୋଇଛି । ଉପରେ ଶୁଭୁଛି, ରାଜଗୃହର ରାଜପଥରେ ଜନତାର ଦୈନନ୍ଦିନ କର୍ମ ମୁଖର କୋଳାହଳ !

ବନ୍ଦୀ ଥରେ କ୍ଷୁଧାର୍ତ୍ତ ଦୃଷ୍ଟିରେ ଚାହିଁଲେ ଛିଦ୍ର ପଥର ସେହି ଆଲୋକଅଡ଼େ । ପ୍ରଭାତର ଶାନ୍ତ, ସ୍ନିଗ୍ଧ ଆଲୋକରେଖା···ପ୍ରଭୁ ବୁଦ୍ଧଙ୍କର ଆଶୀର୍ବାଦ ପରି ।

ବାର୍ଦ୍ଧକ୍ୟ, ଅନଶନ ଓ ଅତ୍ୟାଚାରରେ ବନ୍ଦୀ ଶୀର୍ଣ୍ଣକାୟ, ଦଶ୍ୟଛନ୍ନ ପ୍ରେତଛାୟା ପରି । ଏକଦା ବିପୁଳ ବକ୍ଷଦେଶ, ରୁକ୍ଷ ଧୂସର ଶ୍ମଶ୍ରୁ ଜାଲରେ ଆଚ୍ଛନ୍ନ । ଦେହର ଚର୍ମ ଲୋଳିତ ।

ବନ୍ଦୀ; ମଗଧରାଜ ବିମ୍ବିସାର ।

ପୁତ୍ର ଅଜାତଶତ୍ରୁର ଆଦେଶରେ କାରାରୁଦ୍ଧ ହୋଇ ପଡ଼ିଛନ୍ତି ଏହି ଜୀବନ୍ତ ସମାଧି ତଳେ ।

ବିମ୍ବିସାରଙ୍କୁ ହତ୍ୟା କରିବା ପାଇଁ, ଅଜାତଶତ୍ରୁଙ୍କର ପଣ··· ତିଳେ, ତିଳେ, ଅନାହାରରେ !

କ୍ଳାନ୍ତି ଓ ଅବସାଦରେ ବିମ୍ବିସାରଙ୍କର କୋଟରଗତ ଚକ୍ଷୁର ଦୁଇ ଅକ୍ଷିପତା ପୁଣି ମୁଦି ହୋଇଗଲା । ଅନାହାର ଓ କ୍ଷୁଧାରେ ତାଙ୍କର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗ ଅବଶ ଜଡ଼ ହୋଇ ଆସୁଛି । ତୃଷା-ସ୍ଫୀତ ଜିହ୍ୱା ଶୁଷ୍କ ଓଷ୍ଠ ଉପରେ ଥରେ ବୁଲାଇ ଆଣି ବିମ୍ବିସାର ରୁଦ୍ଧକଣ୍ଠରେ ଆର୍ତ୍ତନାଦ କଲେ ।

ଏଇ ରାଜଗୃହ ଦିନେ ନିର୍ମିତ ହୋଇଥିଲା ତାଙ୍କର ଆଦେଶରେ । ଆଜି ସେହି ରାଜଗୃହ ଅନ୍ଧକୂପ ମଧ୍ୟରେ । ଲୋକଲୋଚନର ଅଗୋଚରରେ ତିଳେ ତିଳେ ସେ ଭୋଗ କରୁଛନ୍ତି ମୃତ୍ୟୁର ଯନ୍ତ୍ରଣା । କର୍ମଫଳ ! ପୂର୍ବ ଜନ୍ମର କର୍ମଫଳ !

ପୁରାତନ ରାଜଧାନୀ କୁଶାଗ୍ରନଗରରେ ବ୍ୟାପିଲା ଥରେ ଭୀଷଣ ଅଗ୍ନିଭୟ । ସମଗ୍ର ରାଜଧାନୀ ଭସ୍ମସ୍ତୂପରେ ପରିଣତ ହେବାକୁ ବସିଲା । ବିମ୍ବିସାର ଆଦେଶ ଦେଲେ ଯାହାର ଗୃହରେ ଅଗ୍ନି ସଞ୍ଚାର ହେବ, ସେ ହେବ ନିର୍ବାସିତ । କିନ୍ତୁ ଅଦୃଷ୍ଟର ବିଧାନ ବିଚିତ୍ର । ବିମ୍ବିସାରଙ୍କ ପ୍ରାସାଦରେ ହେଲା ଅଗ୍ନିସଞ୍ଚାର । ବିମ୍ବିସାର ଶୀତଳ ବନରେ ଗ୍ରହଣ କଲେ ସ୍ୱେଚ୍ଛାକୃତ ନିର୍ବାସନ ।

ସର୍ପିଣୀନଦୀ ସେବିତା ଗ୍ଲାୟୁସ୍ନିଗ୍ଧ ବିପୁଳଗିରି, ବୈଭାରଗିରି ଓ ଗୃଧ୍ରକୂଟ ମେଖଳାବେଷ୍ଟିତ ଶୀତଳବନ ବିମ୍ବିସାରଙ୍କୁ ମୁଗ୍ଧ କରିଥିଲା । ସେହିଠାରେ ତେଣୁ ତାଙ୍କର ଆଦେଶରେ, ନିର୍ମିତ ହେଲା ମଗଧର ନୂତନ ରାଜଧାନୀ—ରାଜଗୃହ ।

ବିମ୍ବିସାର ସେହି ରାଜଗୃହର ଶେଷ ଦର୍ଶନ ପାଇଁ ଯେପରି କି ଦୁଇ କ୍ଲାନ୍ତ ଚକ୍ଷୁ ପୁନରୁନ୍ମୀଳନ କଲେ । ପ୍ରାଣହୀନ ଦୃଷ୍ଟିହୀନ ଦୁଇ-ଆଖି, ପଥରର ଆଖିପରି ।

ସେଦିନ···ଅଜାତଶତ୍ରୁ ବିମ୍ବିସାରଙ୍କୁ କାରାରୁଦ୍ଧ କରିସାରିବା ପରେ । ଶୋକାତୁରା, ଆଲୁଳାୟିତକୁନ୍ତଳା ଅଶ୍ରୁମୁଖୀ କୋଶଳାଦେବୀ ଅଜାତଶତ୍ରୁଙ୍କ ନିକଟରେ ପ୍ରାର୍ଥନା କରିଥିଲେ···

'ପୁତ୍ର, ଅଜାତଶତ୍ରୁ' !

ଅଜାତଶତ୍ରୁ ଉପହାସର କଣ୍ଠରେ କହିଲେ—'ଆଦେଶ କରନ୍ତୁ କାଶୀରାଜନନ୍ଦିନୀ ।'

"ମାତା ବୋଲି ସମ୍ବୋଧନ କରିବା କଣ ଏପରି ଲଜ୍ଜାକର, ପୁତ୍ର ?"

"ପୁତ୍ର ! ହାଃ—ହାଃ—ହାଃ" ଅଟ୍ଟହାସ କରି ଉଠିଲେ ଅଜାତଶତ୍ରୁ । ତା ପରେ ରୁକ୍ଷ ନିର୍ମମ କଣ୍ଠରେ କହିଥିଲେ—"ମାତା ବୋଲି ସମ୍ବୋଧନ କରିବାକୁ ଆପତ୍ତି ନାହିଁ ମୋର । କିନ୍ତୁ କହି ପାରିବ ମାତା, ଯେଉଁ ନାରୀ ଗର୍ଭସ୍ଥ ପୁତ୍ର, ଭବିଷ୍ୟତକାଳରେ କେବେ ପିତୃହନ୍ତା ହେବ ଆଶଙ୍କା କରି, ଦିନେ ଗୋପନରେ ସନ୍ତର୍ପଣରେ ଜୀବହତ୍ୟା ପାଇଁ ଭ୍ରୂକ୍ଷେପ କରି ନ ଥିଲା, ସେହି ନାରୀ କେବେ ସେ ହତଭାଗ୍ୟ ନିକଟକୁ ଆସେ ଯଦି ପୁତ୍ର ସମ୍ବୋଧନ କରି, ତା ହେଲେ କଣ ଦେବ ସେ ତାର ପ୍ରତ୍ୟୁତ୍ତର ?"

କୋଶଳା ଦେବୀ ଅସହାୟ କଣ୍ଠରେ କହିଲେ, "ଶତବାର କହୁଛି ତ ପୁତ୍ର, ଏ କେବଳ ମିଥ୍ୟା ଜନଶ୍ରୁତି ।"

ଅଜାତଶତ୍ରୁ କହିଲେ—"ସତ୍ୟତା ନ ଥିଲେ ଶ୍ରୁତି ନ ଥାଏ କାଶୀରାଜନନ୍ଦିନୀ ! କିନ୍ତୁ ସେ ଆଲୋଚନା କାହିଁକି ? କେବଳ ବିମ୍ବିସାରଙ୍କ କାରାମୁକ୍ତି ଛଡ଼ା ଅନ୍ୟ ସମସ୍ତ ଅନୁରୋଧ ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛି ମୁଁ ।"

କୋଶଳାଦେବୀ ମଳିନ ଚେଲାଞ୍ଚଳରେ ଅଶ୍ରୁମାର୍ଜନ କରି କହିଲେ—"କୌଣସି ପିତୃରକ୍ତରେ ଯଦି ମହାରାଜାଙ୍କର ଅଭିଷେକର ମଙ୍ଗଳଘଟପୂର୍ଣ୍ଣ କରିବାର କାମନା, ତାର ପ୍ରତିରୋଧ କରିବାର ଅସ୍ପର୍ଦ୍ଧା କାହାର ? କିନ୍ତୁ ମୋର କେବଳ ଗୋଟିଏ ଭିକ୍ଷା ଥିଲା ମହାରାଜ । ଏହି ହତଭାଗିନୀର ସ୍ୱହସ୍ତପ୍ରସ୍ତୁତ ଖାଦ୍ୟଛଡ଼ା ବିମ୍ବିସାରଙ୍କର ଅନ୍ୟ କୌଣସିଥିରେ ରୁଚି ନ ଥିଲା । ଆଜି ତାଙ୍କୁ କାରାଗାରରେ, ସ୍ୱହସ୍ତରେ ଟିକିଏ ଖାଦ୍ୟ ପରିବେଷଣ କରିବାର ସୁଯୋଗରୁ ମୋତେ ବଞ୍ଚିତ କରିବେ ନାହିଁ ମହାରାଜ ।"

ଅଜାତଶତ୍ରୁ କହିଲେ —"ଏ ପ୍ରାର୍ଥନା ମୁଁ ପୂର୍ଣ୍ଣ କଲି କାଶୀ-ରାଜନନ୍ଦିନୀ !"

କିନ୍ତୁ କୋଶଳାଦେବୀଙ୍କର ପ୍ରସ୍ଥାନ ପରେ, କାରଗାରର ରକ୍ଷୀ ଚଣ୍ଡକୁ ଆଦେଶ ଦେଲେ ଅଜାତଶତ୍ରୁ କୋଶଳାଦେବୀଙ୍କ ପ୍ରେରିତ କୌଣସି ଖାଦ୍ୟ ଯେପରି ବନ୍ଦୀ ସ୍ପର୍ଶ କରି ନ ପାରେ !

ଜଳପାତ୍ର ଶୂନ୍ୟ । ବିମ୍ବିସାର ଦୁଇ ଶିଥିଳ କମ୍ପିତ ହସ୍ତରେ ସେହି ଶୂନ୍ୟପାତ୍ର ମୁଖାଲଗ୍ନ କରୁ କରୁ ପାତ୍ରଟି ତଳେ ପଡ଼ି ଚୂର୍ଣ୍ଣ ହୋଇଗଲା । ପ୍ରଭାତର ସୂର୍ଯ୍ୟ ଆକାଶପଥରେ ଅନେକ ଉପରକୁ ଉଠିଗଲାଣି । ଶିଖରର ଛିଦ୍ରପଥରେ କ୍ଷୀଣ ଆଲୋକରେଖା କେତେବେଳୁ ନିଭିଗଲାଣି । ପୂତଗନ୍ଧମୟ କାରାଗାରରେ କେବଳ ଅନ୍ଧକାର, ନୀରନ୍ଧ୍ର ନିରାନନ୍ଦ ଓ ନିଷ୍ଠୁର ।

କ୍ଷୁଧାର ଅତ୍ୟାଗ୍ରହ ଆଉ ନାହିଁ । ଅଛି କେବଳ ଅତୃପ୍ତ ଦେହ ଓ ତୃଷା । ଏହାପରେ ସେଥିରୁ ମଧ୍ୟ ମୁକ୍ତି ମିଳିବ । ତାପରେ ସବୁ ଶୂନ୍ୟ···ବୌଦ୍ଧର ଧ୍ୟାନଲୋକ ପରି । ନିଷ୍ପଲକ, ସ୍ଥିର ଅକ୍ଷିପତା ଶୂନ୍ୟବୃତ୍ତର ପରିଧି ଧୀରେ ଧୀରେ ଯେପରି ବିମ୍ବିସାରଙ୍କ ଦୃଷ୍ଟିପଥେ ନିକଟରୁ ନିକଟତର ହୋଇ ଆସୁଛି । ମହାଶୂନ୍ୟର ପୃଷ୍ଠଭୂମିରେ, ବିମ୍ବିସାରଙ୍କ କୁହେଳିକାବୃତ ଦୃଷ୍ଟିପଥରେ ଭାସି ଉଠିଲା ଧ୍ୟାନ ଗମ୍ଭୀର କାୟୋତ୍ସର୍ଗମୁଦ୍ରାବଦ୍ଧ ପ୍ରଭୁ ବୁଦ୍ଧଙ୍କର ପ୍ରଶାନ୍ତ ମୂର୍ତ୍ତି । ଦୁଇ ଅର୍ଦ୍ଧନିମିଳିତ ନୟନରେ ତାଙ୍କର ଶାନ୍ତିର ସ୍ୱସ୍ତ୍ୟୟନ ।

ତୃଷାରେ ବିମ୍ବିସାରଙ୍କର ଜିଭ ଓ ଓଠ ଫାଟି ସେଥିରୁ ଅଳ୍ପ ଅଳ୍ପ କଳା ରକ୍ତ ଝରୁଛି । ସେହି ରକ୍ତରେ ବିମ୍ବିସାରଙ୍କର ଶୁଷ୍କ କଣ୍ଠରେ ଆହତ ପଶୁ ପରି ବିମ୍ବିସାର ଗର୍ଜନ କରି ଉଠିଲେ···

ମହାଶୂନ୍ୟର ପୃଷ୍ଠ ଭୂମିରେ ବିମ୍ବିସାରଙ୍କ ଦୃଷ୍ଟିପଥରେ ଭାସି ଉଠିଲା ଧ୍ୟାନଗମ୍ଭୀର ଗୃଧ୍ରକୂଟ ଶିଖରର ସପ୍ତପର୍ଣ୍ଣୀ ଗହ୍ୱର । ଶାକ୍ୟ-

ବଂଶୋଦ୍ଭବ ରାଜପୁତ୍ର ଗୌତମ ସନ୍ନ୍ୟାସ ଗ୍ରହଣ କରି ସପ୍ତପର୍ଣ୍ଣୀ ଗହ୍ୱରରେ ଶୁଦ୍ଧ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରୁଅଛନ୍ତି, ଲୋକମୁଖରେ ଏହି ବାର୍ତ୍ତା ଶୁଣି ବିମ୍ବିସାର ବିସ୍ମିତ ହୋଇଥିଲେ ।

ସେ ଦିନ ମେଘହୀନ ନୀଳ ଆକାଶରେ ଉଦାସ ଗୋଧୂଳି । ବିମ୍ବିସାର ଗୃଧ୍ରକୂଟ ଶିଖରକୁ ପାରିଷଦବେଷ୍ଟିତ ହୋଇ ଯାଇଥିଲେ ଗୌତମଙ୍କ ଦର୍ଶନ ପାଇଁ । ସପ୍ତପର୍ଣ୍ଣୀର ଦକ୍ଷିଣ ଅଳିନ୍ଦରେ ଗୌତମ ଅନୁଦାତ୍ତ କଣ୍ଠରେ ସମବେତ କେତେଜଣ ଭିକ୍ଷୁଙ୍କୁ ପ୍ରବ୍ରଜ୍ୟାସୂତ୍ର ବ୍ୟାଖ୍ୟାନ କରୁଥିଲେ । ଗୃଧ୍ରକୂଟର ପାଦଦେଶରେ ମୋରନିବାପ*ରେ ଶିଖୀର କଳାପ ରଚିତ ନୃତ୍ୟ ଶିଖିନୀର ଅଦର୍ଶନରେ ଭଗ୍ନଛନ୍ଦ ହୋଇ ଉଠୁଛି । ଅଉ କେତେବେଳେ ବା ବିହ୍ୱଳ ହୋଇ ଉଠୁଛି କଳାପହୀନାର ଚଞ୍ଚୁ ଚୁମ୍ବନରେ । ଅଦୂରରେ ମୃଗୋଦ୍ୟାନର ଶ୍ୟାମଘନ ଦୂର୍ବାଶଯ୍ୟା ଉପରେ ରାଶି ରାଶି ମୃଗ ରୋମନ୍ଥନ କରୁଛନ୍ତି । ସମୀପବର୍ତ୍ତୀ ସୁମାଗଧୀ ପୁଷ୍କରିଣୀରେ କାକଚକ୍ଷୁ ଜଳରେ ମୁଗ୍‌ଧା ଏକ ହରିଣୀ ନିଜର ପ୍ରତିବିମ୍ବ ଚାହିଁ ଦେଖୁଛି ଆତ୍ମବିସ୍ମୃତା ହୋଇ ।

ସାଧନାରେ ଗୌତମଙ୍କର ବରତନୁ ଉଜ୍ଜ୍ୱଳ, ଅର୍ଦ୍ଧ ନିମୀଳିତ ନୟନଯୁଗଳରେ ଗୋଧୂଳିର ଉଦାସ ଛାୟା, ମୁଦ୍ରାବଦ୍ଧ କର—ପଲ୍ଲବରେ ଶାନ୍ତିର ଆଶୀର୍ବାଦ । ସାଦର ସମ୍ଭାଷଣାନ୍ତେ ବିମ୍ବିସାର ପ୍ରଶ୍ନ କଲେ—'କେଉଁ ଦୁଃଖରେ କୁମାର ଏ କୃଚ୍ଛ୍ର ସାଧନା ?'

ଗୌତମ ସ୍ମିତ ହସି ଉତ୍ତର ଦେଲେ—ଦୁଃଖପାଇଁ ନୁହେଁ ମହାରାଜ, ଦୁଃଖର କାରଣ ଓ ନିଦାନର ସନ୍ଧାନପାଇଁ ଏ ସନ୍ନ୍ୟାସ, ଏ କୃଚ୍ଛ୍ର ସାଧନା !

---

* ମୟୂର ଚରିବାର ସ୍ଥାନ ।

ବିମ୍ବିସାର ଅଟ୍ଟହାସ କରି କହିଲେ—କାରଣ ତ ଅତି ସହଜ । କିନ୍ତୁ ସ୍ୱପ୍ନପର୍ଣ୍ଣୀ ଗହ୍ୱରରେ ତାର ନିଦାନ କାହିଁ ପାଇବେ କୁମାର ? ଆସନ୍ତୁ ତା ହେଲେ ରାଜଗୃହର ଉତ୍ସବଶାଳାକୁ । ଦ୍ରାକ୍ଷା, ଫେନିଳ ମଦ୍ୟ ଓ ମାଗଧୀର ଚଟୁଳ ଲାସ୍ୟରେ ପାଇବେ କୁମାର ସବୁ ଦୁଃଖର ନିଦାନ ।

ନିର୍ଦ୍ଦୋଷ ଆନନ୍ଦରେ ବିମ୍ବିସାର ପୁଣି ଅଟ୍ଟହାସ କରି ଉଠିଲେ । ଗୌତମଙ୍କର ଦୁଇ ଅର୍ଦ୍ଧନିମିଳିତ ନୟନରେ ଗୋଧୂଳିର ଉଦାସ ଛାୟା, ସନ୍ଧ୍ୟାର ମୌନ ଅନ୍ଧକାର ପରି ଗଭୀର ଓ ଗମ୍ଭୀର ହୋଇ ଆସିଲା ।

ଆଃ···ତୃଷାରେ ବିମ୍ବିସାରଙ୍କର କଣ୍ଠନାଳୀ କିଏ ଯେପରି ଟାଣି ଛିଡ଼ାଇ ପକାଉଛି ।

କିଛିକ୍ଷଣର ନୀରବତା ପରେ ଗୌତମ ଉତ୍ତର ଦେଲେ, କାମନାର ବାରିରେ ଏ ତୃଷାର ଶାନ୍ତି ନାହିଁ ମହାରାଜ ।

ନିଭୃତ କାରାର ପ୍ରାଣହୀନ ନୀରବତା ସେହି ବାଣୀରେ ଯେପରି ପ୍ରତିଧ୍ୱନିତ ହୋଇ ଉଠିଲା ।

ଲାସ୍ୟରତା ସୁମାଗଧୀର ଅଲକ୍ତକ-ରଞ୍ଜିତ ଶିଞ୍ଜିନିକ୍ୱଣିତ ଚରଣ ଆଜି ନୀରବ, କଜ୍ଜଳସୀମାଙ୍କିତ ନୟନରେ ମରଣର ଭ୍ରୂକୁଟୀ । ଦ୍ରାକ୍ଷାର ଫେନିଳ ପାନପାତ୍ରରେ ହଳାହଳର ବୁଦ୍‌ବୁଦ୍ । କିଏ ହୋଇ ? କାହାର ଏ ନୂପୁର-ଶିଞ୍ଜନ ? କୋଶଳା ଦେବୀ ? ମହାରାଣୀ ?

କାରାଗାରର ରକ୍ଷୀ ପରିବର୍ତ୍ତନ ହେଉଛି । ଲୌହ ସାଙ୍କୁଳିର ଶବ୍ଦ । ଅସହ୍ୟ ତୃଷାରେ ବିମ୍ବିସାର ଶରହତ ବନ୍ୟ ପଶୁପରି ନିଜର ଗୋଟିଏ ବାହୁ କାମୁଡ଼ି ପକାଇଲେ ।

× × × ×

(ଦୁଇ)

ଅଜାତଶତ୍ରୁ ନିଷ୍ପଲକ ଦୃଷ୍ଟିରେ ପ୍ରାସାଦକକ୍ଷର ବାତାୟନ-ପଥରେ ଗୃହଁ ଥିଲେ ରାଜଗୃହର ଦିଗନ୍ତମେଖଳା ଗିରିମାଳା ଆଡ଼େ । ପଲଙ୍କରେ ସନ୍ତାନସମ୍ଭବା ରାଣୀ ବଜ୍ରା ଦେହ ଢାଳି ପଡ଼ିଛନ୍ତି ମରୁନଦୀ ପରି । ପାରାବତପାଳିକାରୁ ଦଳ ଦଳ ପାରାବତ ଉଡ଼ିଯାଉଛନ୍ତି, ପୁଣି ଫେରି ଆସୁଛନ୍ତି । ଉଦ୍ୟାନର ତମାଳ ତଳେ ଭବନଶିଖୀ ଉଦ୍ଦାମ ନୃତ୍ୟର ଉଦ୍ୟମରେ ଶିଖା ବିସ୍ତାର କରୁଛି ।

ବଜ୍ରା କ୍ଳାନ୍ତ କଣ୍ଠରେ ଡାକିଲେ···ମହାରାଜ !

ଅଜାତଶତ୍ରୁ ଶଯ୍ୟା ପାର୍ଶ୍ୱରେ ବସି ଧୀରେ ଧୀରେ ବଜ୍ରାଙ୍କର ମଳିନ କପାଳ ଉପରେ କର ସଞ୍ଚାଳନ କରି କହିଲେ—କୁହ ବଜ୍ରା ।

ବଜ୍ରା ଅଜାତଶତ୍ରୁଙ୍କର ଗୋଟିଏ ହାତ ଧରି କହିଲେ —କୁହନ୍ତୁ ତ ମହାରାଜ, ଏ ସନ୍ତାନ ପୁତ୍ର ହେବ ନା କନ୍ୟା ?

ଅଜାତଶତ୍ରୁ ବିଚଳିତ ହୋଇ ଉଠିଲେ ।

ବଜ୍ରାଙ୍କର ପୁଣି ସେହି ନିଷ୍ଠୁର ପ୍ରଶ୍ନ—କୁହନ୍ତୁ ମହାରାଜ, ଏ ସନ୍ତାନ ପୁତ୍ର ହେବ ନା କନ୍ୟା ?

ଅଜାତଶତ୍ରୁ ବଜ୍ରାଙ୍କର ଶଯ୍ୟାପାର୍ଶ୍ୱରୁ ଉଠି ପଳାଇଲେ ନିଜର ନିଭୃତ କକ୍ଷକୁ । କି ଏକ ତୀବ୍ର ଯନ୍ତ୍ରଣାରେ ବଜ୍ରା ଚିତ୍କାର କରି ଉଠିଲେ ।

ପୁତ୍ର ! ପୁତ୍ର ! ଅଜାତଶତ୍ରୁଙ୍କର ବାଷ୍ପାପ୍ଳୁତ ଦୃଷ୍ଟିପଥରେ ଭାସି ଉଠିଲା ରାଜଗୃହର ଅନ୍ଧକାର କାରାଗାର । ହସ୍ତପଦ ବଦ୍ଧ, ଶୃଙ୍ଖଳିତ ଅଜାତଶତ୍ରୁ ଅନାହାରରେ ଆର୍ତ୍ତନାଦ କରୁଛନ୍ତି ।

ଅତ ନିଷ୍ଠୁର ସେ ଭବିଷ୍ୟତବାଣୀ···ବିମ୍ବିସାରଙ୍କର ପ୍ରଥମ ପୁତ୍ର ହେବ ପିତୃହନ୍ତା * । ଅଜାତଶତ୍ରୁଙ୍କର ମୁଖର ଭଙ୍ଗୀ କଠୋର ହୋଇ ଉଠିଲା । ସନ୍ତାନସମ୍ଭବା ବିମ୍ବିସାରଙ୍କୁ ଅନ୍ଧକାର କାରାଗାରରେ ବନ୍ଦୀ କରିବେ ? ନବଜାତ ଶିଶୁକୁ ଅନ୍ଧକୂପ ମଧ୍ୟରେ ହତ୍ୟା କରିବେ ? ଅତୀତ ଓ ଭବିଷ୍ୟତ ସବୁ ଦୁଇ ହାତରେ ନିଶ୍ଚିହ୍ନ କରିଦେବା ଅଜାତଶତ୍ରୁଙ୍କ ପକ୍ଷରେ ଏପରି କଣ ବା ଦୁଃସାଧ୍ୟ ? ଅତୀତ ତ ଆଜି କାରାଗାରରେ ଗତାୟୁ । ଆଉ ଭବିଷ୍ୟତ ? କିନ୍ତୁ ଅତୀତ ଓ ଭବିଷ୍ୟତହୀନ ବର୍ତ୍ତମାନ ଯେ ସ୍ଥିତିହୀନ ।

ବିମ୍ବିସାରଙ୍କର ଆର୍ତ୍ତଚିତ୍କାର ଶୁଭୁଛି । ପ୍ରସୂତ-ବେଦନାର କରୁଣ ମର୍ମଭେଦୀ ଆର୍ତ୍ତନାଦ ! ସ୍ରଷ୍ଟାକୁ ଦଳିତ କରି, ମଥିତ କରି, ଜରାୟୁ ଛିନ୍ନ ବିଦୀର୍ଣ୍ଣ କରି ସୃଷ୍ଟି ଲୋଡ଼ୁଛି ଆତ୍ମପ୍ରକାଶ ।

ସେଦିନ କୁଆଡ଼େ ବିମ୍ବିସାରଙ୍କ ଆଦେଶରେ ରାଜଗୃହର ପଥେ, ପଥେ ବିପୁଳ ଉତ୍ସବର ଅଫୁରନ୍ତ ପ୍ରବାହ···ଅଜାତଶତ୍ରୁଙ୍କର ମନେ ପଡ଼ିଗଲା ଶୈଶବରେ ଧାଈଠାରୁ ଶୁଣା ନିଜର ଜନ୍ମ କାହାଣୀ ।···ବିମ୍ବିସାରଙ୍କର ଆର୍ତ୍ତନାଦରେ ପ୍ରାସାଦର କୋଣ, ଅନୁକୋଣ, ଝଙ୍କୃତ ହୋଇ ଉଠୁଛି । ସୃଷ୍ଟି ନିଷ୍ଠୁର । ନିଜର ସୃଷ୍ଟିରେ ସ୍ରଷ୍ଟା କ୍ରୀତଦାସ । ସୃଷ୍ଟିର କରୁଣା ଭିକ୍ଷା ଛଡ଼ା ସ୍ରଷ୍ଟାର ଗତ୍ୟନ୍ତର ନାହିଁ । ତଥାପି ସୃଷ୍ଟିରେ କି ବିପୁଳ ଆନନ୍ଦ, କି ଗର୍ବ ! ପିତୃତ୍ୱର ଆନନ୍ଦରେ ଅଜାତଶତ୍ରୁଙ୍କର ପ୍ରାଣ, ନିଜର ଅଜାଣତରେ ଉଦ୍‌ବେଳିତ ହୋଇ ଉଠିଲା ।···

---

* ଅଜାତଶତ୍ରୁଙ୍କର ପୁତ୍ର ଉଦାୟୀ ଓ ତାଙ୍କର ପରବର୍ତ୍ତୀ ତିନିଜଣ ବଂଶଧର ପିତୃହନ୍ତା ଥିଲେ । ପ୍ରଜାମାନେ ଏଥିରେ ଉତ୍ତେଜିତ ହୋଇ କାଶୀରାଜା ଶିଶୁନାଗଙ୍କୁ ମଗଧର ସିଂହାସନରେ ଅଭିଷିକ୍ତ କରିଥିଲେ ।

ନିଭୃତ କକ୍ଷରେ କାହାର ପାଦଶବ୍ଦ ଶୁଣି ଅଜାତଶତ୍ରୁ ଫେରି ଚାହିଁଲେ । କାରାଗାରର ରକ୍ଷୀ ଚଣ୍ଡ, ଅଜାତଶତ୍ରୁଙ୍କ ଆଦେଶ ପ୍ରତୀକ୍ଷାରେ ଯେପରି ଠିଆ ହୋଇ ରହିଛି ।

ଅଜାତଶତ୍ରୁ ପଚାରିଲେ···କି ସମ୍ବାଦ ଚଣ୍ଡ ?

ଚଣ୍ଡ କହିଲା ··ଗତ ତିନିଦିନ ଧରି ମହାରାଜାଙ୍କ ଆଦେଶରେ ଜଳବିନ୍ଦୁ ସୁଦ୍ଧା ଦିଆଯାଇ ନାହିଁ ! ଆଜି ଚତୁର୍ଥ ଦିବସ ।

ଅଜାତଶତ୍ରୁଙ୍କର ମୁଖର ଭଙ୍ଗୀ ପୁଣି କଠୋର ହୋଇ ଉଠିଲା । ଚଣ୍ଡକୁ ରୁକ୍ଷ କଣ୍ଠରେ ପୁଣି ପଚାରିଲେ···ତା' ପରେ ?

ଚଣ୍ଡ କହିଲା···ପ୍ରଥମେ ଶୁଭୁଥିଲା 'ହାୟ ପୁତ୍ର, ହାୟ ରାଜଗୃହ' ବୋଲି ଆର୍ତ୍ତ ଚିତ୍କାର !

ରାଣୀହଂସପୁର ମଧ୍ୟରୁ ଶୁଭିଲା ଶଙ୍ଖ ଓ ହୁଳହୁଳି ଧ୍ୱନି ! ବନ୍ଦୀଙ୍କର ଚିତ୍କାର କେତେବେଳୁ ନୀରବ ହେଲଣି । ଧାତ୍ରୀ ବସୁମତୀ ଅସ୍ତବ୍ୟସ୍ତ ପଦରେ ଧାଇଁ ଆସି ଜଣାଇଲେ···"ସୁସମ୍ବାଦ, ମହାରାଜ ! ମହାଦେବୀଙ୍କର ପୁତ୍ରଲାଭ ହୋଇଛି । ମହାମନ୍ତ୍ରୀଙ୍କୁ ଡାକି ରାଜଗୃହରେ ଉତ୍ସବ ପାଇଁ ଆଦେଶ ଦିଅନ୍ତୁ ।"

ଚଣ୍ଡ କହିଲା···'ଆଦେଶ ଦିଅନ୍ତୁ ମହାରାଜ ।'

ଅଜାତଶତ୍ରୁ ଥରେ ଚାହିଁଲେ ଧାତ୍ରୀ ବସୁମତୀ ଆଡ଼େ, ଆଉ ଥରେ ଚାହିଁଲେ ଚଣ୍ଡ ଆଡ଼େ ! ତା ପର ପରେ ବିହ୍ୱଳ ପରି ଧାଇଁ ଚାଲିଗଲେ ବାହାରକୁ । ଅଙ୍ଗନ ପରେ ଅଙ୍ଗନ, ଅଳିନ୍ଦ ପରେ ଅଳିନ୍ଦ, ସୋପାନ ଶ୍ରେଣୀ ପରେ ସୋପାନ ଶ୍ରେଣୀ, ଅଜାତଶତ୍ରୁ ଧାଇଁ ଚାଲିଛନ୍ତି ଉନ୍ମତ୍ତ ପରି । କାରାଗାରର ପ୍ରବେଶ ଦ୍ୱାର ନିକଟରେ ଅଜାତଶତ୍ରୁ ରହିଗଲେ । ରକ୍ଷୀ ଅଭିବାଦନ ଜଣାଇଲା ।

ଅଜାତଶତ୍ରୁ ଆଦେଶ ଦେଲେ···ଦ୍ୱାର ଖୋଲ ରକ୍ଷୀ !

ଦୁଇ ପ୍ରକାଣ୍ଡ ଲୌହ କବାଟ ବିକଟ ଶବ୍ଦ କରି ଖୋଲିଗଲା । ଭିତରେ ନିରନ୍ଧ୍ର ଅନ୍ଧକାର । ଅଜାତଶତ୍ରୁ ଅନ୍ଧକାରାବୃତ ସୋପାନ-ଶ୍ରେଣୀ ଅତିକ୍ରମ କରି ଧାଇଁଗଲେ କାରାଗାର ଭିତରକୁ ।

ପିତା, ଆଜି ପାଇଛି ପିତୃତ୍ୱର ସନ୍ଧାନ !

ସ୍ରଷ୍ଟା ଚିରଦିନ ଉଦାର, କ୍ଷମାସ୍ନିଗ୍ଧ, କରୁଣାମୟ । ଅଜାତଶତ୍ରୁ ଅବୋଧ ଶିଶୁପରି ବିମ୍ବିସାରଙ୍କ କୋଳରେ ମୁହଁ ଲୁଚାଇ କ୍ଷମା ଭିକ୍ଷା କରିବେ !

କିନ୍ତୁ ବହୁ ବିଳମ୍ବରେ ଆସିଲେ ଅଜାତଶତ୍ରୁ । ବିମ୍ବିସାରଙ୍କ ପ୍ରାଣହୀନ ଶୀର୍ଣ୍ଣ ଦେହ ପଡ଼ିଛି କାରାଗାରର ପାଷାଣ ଚଟାଣ ଉପରେ । ଗୋଟିଏ ବାହୁ ହିଂସ୍ର କ୍ଷୁଧାରେ କାମୁଡ଼ି ପକାଇଛନ୍ତି, ଜୀବନର ଅନ୍ତିମ ମୁହୂର୍ତ୍ତରେ ବ୍ୟାଧର ଶରାହତ ବନ୍ୟ ପଶୁ ପରି । କ୍ଷତ ସ୍ଥାନରୁ କେଇ ଧାର ରକ୍ତ ଝରି ପୁଣି ଶୁଖିଯାଇଛି ।

ରାଜପ୍ରାସାଦରୁ ଶୁଭୁଛି ନବଜାତ ସନ୍ତାନର ଜନ୍ମ ଘୋଷଣା କରି ଘନ ଘନ ଶଙ୍ଖଧ୍ୱନି ।



# ଅଦିନ ବଉଦ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ଖଞ୍ଜଣି ବଜାଇ ଗୀତ ଗାଇ ଦୁଆରେ ଦୁଆରେ ସେ ଭିକ ମାଗି ବୁଲେ । ସକାଳୁ ଯାଏ ଯେ ଖବର ଲେଉଟିଲେ ଯାଇଁ ଆମ ଗାଁ ସେ ପଟେ ପଡ଼ିଥିବା ଯେଉଁ ପାସିଦିଆ ବରଗଛଟା ନାଁ—ତାର ମୂଳରେ ଆସି ବସେ । ଅଳପ ଦୂରକୁ ଯେଉଁ ମହାଦେବ ମନ୍ଦିର, ସେଇଟା ତାର ବରଷା କାକରର ନିଠୁର ଦରଦୀ । ଆଜ ଖବ ଦିନେ, କି ଦିନ କି ରାତି ସବୁବେଳେ ସେଇ ଗଛମୂଳ । ସେଇଟି ବସି ସେ ମନ୍ଦିର ଦକ୍ଷିଣକୁ ଯେଉଁ ଚୁଆ:ଣ୍ଡିକ ଅଛି, ଅନେକ ସମୟରେ ତାକୁ ହିଁ ଚାହିଁ ବସେ । ସୂର୍ଯ୍ୟ କିରଣରେ ଯେମିତି ସେ ଚୁଆ ଖଣ୍ଡିକରୁ ଧୂଆଁ ଭଳି ହୋଇ ଧୀରେ ଧୀରେ ପାଣିର ପ୍ରାଣ ବାହାରି ଯାଉଥାଏ ସେମିତି—ଠିକ୍ ସେମିତି, ସକାଳୁ ବେଳ ବୁଡ଼ିଯାଏ ତାର ସିକ୍ତ କଣ୍ଠର ରିକ୍ତ ରାଗିଣୀ ଗୋଟାଏ ଅଜଣା ରାଜ୍ୟର ଅସୀମ ସରଣୀରେ ଲୀନ ହୋଇଯାଏ । ସେ ବୁଝେ । ବୁକୁ ଭିତର ତାର ପଟୁଳିଙ୍କର ମାଟି ପରି ଚଡ଼ ଚଡ଼ ହୋଇ ଫାଟି ପଡ଼େ ।

ବାରମିଶା ଗୃହଲରୁ ଗଣ୍ଡେ ଏଣୁତେଣୁକି ଫୁଟାଇ ମାଗିଅଣା ପୋକା ବାଇଗଣର ଭରତା ଦେଇ ସେ ଦିନ ସେ ଜଦୁଉଦିଆ ଦିପହର ବେଳେ ଖାଉଛି । ମନଟା ବିନା କାରଣରେ ଯେମିତି ଫୁଟିଲା ପେଜ ପରି ଝେକମକ କରି ଉଠିଲା । ଗୋଟାଏ ଅନାଗତ ଆନନ୍ଦର ଉତ୍କଣ୍ଠାରେ ସେ ଆକଣ୍ଠ ଭୋଜନ କରି ଧରିବସିଲା ତାର ଖଞ୍ଜଣି । ତାର ଗଳା ହେଲା, ସେମିତି ଗୀତ ସେ ଯେମିତି ଗାଇ ନ ଥିଲା କେବେ ।

ଗୀତରେ 'କୁଆଡ଼େ ବାଘ ଭାଲୁ ବଶ ହୋଇଯାନ୍ତି । କିନ୍ତୁ ବାଘ ଭାଲୁ ଜାଗା ସେ ନୁହେ । ମୃଗ କୁଆଡ଼େ ଅପଲକ ନୟନରେ ଆସି

ଶୁଣେ । ଆମ ଗାଁରେ କେହି କେବେ ମୃଗ ଦେଖି ଥିବ ଯଦି ସେ କୋଡ଼ିଏ କୋଶ ଦୂରରେ । ସାପ ବି ଭଲ ଗୀତ ଶୁଣିଲେ ଆସି ଖେଳେ । କିନ୍ତୁ ତା ଗୀତରେ ସାପ ବିଲରୁ ବାହାରି ଆସି ନ ଥିଲା—ବାହାରି ଆସିଥିଲା ଗୋଟିଏ ମଣିଷଛୁଆ—ବିଲରୁ ନୁହେ, ଘରୁ ।

ସେଇ ଦିନ ପାଖରୁ ଲତା ନିତ ଆସି ସୁରଥର ଖଞ୍ଜଣି ଗୀତ ଶୁଣେ । କେତେବେଳେ ବସି, କେତେବେଳେ ଶୋଇ, କେତେବେଳେ ହାମୁଡ଼େଇ, କେତେବେଳେ ଓଲିକୁ ଧରି, କେତେବେଳେ ବା ଗଛ ଡାଳରେ କହୁଣି ରଖି ଗୋଲପି ଗୁଲୁଗୁଲିଆ ଗାଲକୁ ତାର କଅଁଳ ଛିକି ଛିକି ହାତରେ ଭଡ଼ିଦେଇ ଅନିମେଷ ନୟନରେ ସୁରଥକୁ ଚାହିଁ ରହେ । ସୁରଥ ଗୀତ ଗାଇ ପୁଣି ଭିକମାଗି ବାହାରେ—ଲତା ଫେରେ ଘରକୁ ।

ଏମିତି କେତେ ଖରା ଚୁଲିଗଲା । ଦିନେ ଆଉ ଲତା ଆସିଲା ନାହିଁ । ଦିନେ ନୁହେ, ଲଗ ଲଗ ତିନିଦିନ ଆସିଲା ନାହିଁ । ସୁରଥ ଆକୁଳ ହୋଇ ଉଠିଲା । ତିନି ଦିନକୁ ତିନି ସପ୍ତା ଗଲା, ଲତାର ଆଉ ଦେଖା ନାହିଁ । ସେ ଲତା ଘରକୁ ଭିକ ମାଗି ଯାଏ । ନିତି ନିତ ଗଲେ ଚିଡ଼ିବେ ବୋଲି ସେ ସାତ ଦିନେ ଆଠ ଦିନେ ଥରେ ଯାଏ । କିନ୍ତୁ ଲତାକୁ ଆଉ ପାଏ ନାହିଁ ।

ସୁରଥ ଦେଖିଲା, ତା ଆଗରେ ଯେଉଁ ଜଳାଶୟ ଦେଖା ଯାଉଥିଲା, ସେଇଟା ଗୋଟିଏ ମରୀଚିକା । ବେଳେ ବେଳେ ସେ ଭାବେ ସେ ଯେମିତି ଗୋଟିଏ ଦୀର୍ଘ ସ୍ୱପ୍ନ ଦେଖୁ ଦେଖୁ ହଠାତ୍ ତାର ନିଦ ଭାଙ୍ଗି ଯାଇଛି ।

ସେ ବୁଝି ପାରିଲା, ଲତାର ଆଉ ବାହାରକୁ ବାହାରିବାର ବୟସ ନାହିଁ । କିନ୍ତୁ ତା ବୋଲି ସେ ଝରକା ଦେଇ ଦେଖା ବି ଦେବ ନାହିଁ ? ସୂର୍ଯ୍ୟ ଦେଖାଯାଉଛି, ଚନ୍ଦ୍ର ଦେଖାଯାଉଛି, ଗ୍ରହ

ତାର୍ ସମସ୍ତେ ଦେଖାଯାଉଛନ୍ତି, କିନ୍ତୁ ଲତା କଣ ସତେ ସତେ ଆଉ ଦେଖା ଦେବ ନାହିଁ ?

ତାର ପିଲାଦିନ କଥା ମନେ ପଡ଼େ । ଯେଉଁଦିନ ସେ ବାପ ମା ସମସ୍ତଙ୍କୁ ପ୍ରତିମା ଉଠାଇଁଲା ପରି ଜଣକୁ ଜଣକୁ ନିଆଁ ରେ ଉଠାଇଁ ଦେଇ ଆସିଲା—ଭିକ ମାଗି ପେଟ ପୋଷିବା ଛଡ଼ା ତା ଗୃହପାଖରେ ଆଉ କିଛି ବାଟ ଦିଶିଲା ନାହିଁ ତାକୁ—ସେଦିନ କଥା ଆଖି ଆଗରେ ଖଗବେଳର ଝିଲ୍ଲୀ ସାଙ୍ଗରେ ପୁରୁଣା ଛବି ପରି ଝାପ୍‌ସା ଝାପ୍‌ସା ଦେଖାଯାଏ—ଯେତେବେଳେ ମନେ ପଡ଼େ ସେତେବେଳେ ସେ ଦାଣ୍ଡରେ ଦଣ୍ଡେ ଠିଆ ହୋଇ ଗୃହଆଡ଼କୁ ଗୃହେଁ—ସେଦିନ ସେ ଯେମିତି ଥିଲା ଆଜି ବି ସେମିତି—ଏକା—ଦୁନିଆରେ ସେ ଏକା ।

ଏମିତି କେତେ ଖବର୍ ନଡମଡ଼ା ବାଟ ଉପରେ ଥରେ ଘର ଜୋରରେ ଶୀତ ପଡ଼ିଲା । ସୁରଥ ଫେରିଲା ଅନେକ ରାତିରେ । ଗଛମୂଳରେ ଯାଇ ଥିର ହୋଇ ବସି ପଡ଼ିଲା—ସେଇ ଫୁଙ୍ଗା ଦେହରେ । ଗୋଟିଏ ଅଦିନ ବଉଦ କଳାଭୂତ ପରି ହଠାତ୍ ମାଡ଼ି ଆସିଲା । ବର୍ଷା ହେଲା, ତୁଫାନ ହେଲା, ପଥର ପଡ଼ିଲା, ଗଛ ପତ୍ର ଭାଙ୍ଗି ପଡ଼ିବ ଯେମିତି ।

ଥରି ଥରି ସୁରଥ ସେଇ ଖଣ୍ଡିଆ ଦେଉଳ ପାଖକୁ ଗଲା । ଯାଇଁ ଦେଖିଲା ଦେଉଳରେ ପଡ଼ୁଛି ଗୃହ । ବାଟ ନ ପାଇ ସେ ଦେଉଳ ବାରନ୍ଦାରେ ଠିଆହେଲା—ପାଣି ଗୁହୁଥାଏ ସେମିତି । ଦେଉଳ ଘର ଭିତରେ ପବନ ପଶି ଗୋଟାଏ ରାକ୍ଷସ ନିଶ୍ୱାସ ଗୁଡ଼ିଲା ପରି ଶବ୍ଦ ହେଉଥାଏ । ସେ ଦୁଇ ହାତକୁ ଗୁଡ ଉପରେ ରଖି, ପାପୁଲି ଲାଇକା ଚିବୁକତଳେ ଗୁଞ୍ଜି ଦେଇ, କାନ୍ଥକୁ ଆଉଜି, ସେମିତି ଠିଆ ହେଉ ହେଉଁ ଆଉ ସହି ନ ପାରି ବସି ପଡ଼ିଲା ।

ସେତିକିବେଳେ ତା ଆଖିରେ କେମିତି କେଜାଣି ଟିକିଏ ନିଦ ଆସିଲା ଅତି ଆଶ୍ଚର୍ଯ୍ୟ ଭାବରେ ।

ବାଉଳା ଖାଇଲା ପରି ସେ ହଠାତ୍ ଚମକି ପଡ଼ି ଉଠି ଦେଖିଲା ଲତା ସେ ଜଣେ ଆସି ତା ଦେହରେ ଖଣ୍ଡେ କମଳ ପକାଇ ଦେଇ ଖୁବ୍ ଜୋରରେ ପଳାଉଛି ।

ଲତା—ଲତା ! ସେ ଚିତ୍କାର କରି ଉଠିଲା । କିନ୍ତୁ ସେଠି ସେତେବେଳକୁ ଆଉ କେହି ନ ଥିଲେ ।

ସେ ସେହି ତୁଫାନରେ ପ୍ରାଣପଣେ ଲତା ଘର ଯାଏ ଦଉଡ଼ି ଗଲା । କିନ୍ତୁ ଏ କଣ ? ତାଙ୍କ ଘରେ କାନ୍ଦ ବୋବାଳି ପଡ଼ିଛି କାହିଁକି ?

ଲତା ମରିଗଲେ ? ମିଛ କଥା । ସେ ଟିକେ ତା ଦେହରେ କମଳ ଘୋଡ଼ାଇ ତା ଆଗେ ଆଗେ ଆସିଲା ବାହାରି । ସେ ମଲା କେତେବେଳେ ?

ତାର ଏ କଥାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ସମସ୍ତଙ୍କୁ ଦେଖାଇ ଦେଲା—ହେଇଟି, ଦେଖ ମୋ କମଳ—ତମ ଲତା ମୋତେ ଦେଇଛି— ମିଛରେ-ସମସ୍ତେ ଦେଖିଲେ, କମଳଫମଳ କିଛି ନାହିଁ, ସେ ଖାଲି ମିଛଟାରେ କମଳ ଘୋଡ଼ି ହୋଇଛି ବୋଲି କହୁଛି । ତା ପର ଦିନଠୁ ସୁରଥର ଗୀତ ଆଉ ସେ ଗାଁରେ କେହି ଶୁଣିବାକୁ ପାଇଲେ ନାହିଁ—ଆଉ ତା ଖଞ୍ଜଣି ବାଜିଲା ନାହିଁ ।

କିନ୍ତୁ ଆଉ ଗୋଟେ ଗାଁରେ ଠିକ୍ ତା ପରଦିନ ଗୋଟାଏ ଅଦ୍ଭୁତ ଲୋକର ଆବିର୍ଭାବ ହେଲା । ଲୋକଟା କଣିକଣିଆ କଣ୍ଠରେ ଖଞ୍ଜଣି ବଜାଇ ଗୀତ ଗାଇ ଖାଲି ଦେହାରେ ବୁଲେ—ଦୟା କରି କେହି ତାକୁ ଘୋଡ଼ାଇ ଦେବା ପାଇଁ ଚଦର୍ କିମ୍ବା ଖଣ୍ଡେ ଅଧେ ଲୁଗା ଯାଚିଲେ, କହେ—ମୋ ଲତା ମୋତେ କମଳ ଦେଇଛି, ତାଠୁ କଅଣ ତୋ ଲୁଗା ବେଶୀ ଗରମ ?

---

# ହାତ

ଶ୍ରୀ ସଚ୍ଚି ରାଉତରାୟ

ସେ ହାତ ଦେଖେ । ସହରର କାନ୍ଥ ବାଡ଼ରେ ମରା ହୋଇଥିବା ବଡ଼ ବଡ଼ ସିନେମା ପୋଷ୍ଟରଗୁଡ଼ାକ ଛିଣ୍ଡେଇ ଆଣି ସେ ରାସ୍ତାରେ ପାରି ବସି ପଡ଼େ । ତା'ର ବସିବାର ଜାଗା ଗୋଟାଏ ନୁହେଁ । ରାସ୍ତାର ଯେତେବେଳେ ଯୋଉଠି ଲୋକ ଗହଳି ହୁଏ, ସେ ସେଇଠିକି ଆସ୍ଥାନ ଉଠେଇ ନେଇ ପସରା ମେଲା ବସେ । ପସରା ବୋଇଲେ ଖଣ୍ଡେ ଚିରା ମସିଆ କନାର ବସ୍ତାନି । ତା'ଭିତରେ କୋଉ କାଳର ପୁରୁଣା, ତେଲ ଚିକିଟାନିଆ ଖଣ୍ଡେ ସାତଭଙ୍ଗର ସାମୁଦ୍ରିକ ବହି । ବହିର ପୃଷ୍ଠା କଡ଼ସବୁ ମୋଡ଼ିମାଡ଼ି ହୋଇ ବଙ୍କାଟଙ୍କା ହୋଇ ଗଲେଣି, ମଲାଟ ଉପରେ ଖବରକାଗଜ ଖଣ୍ଡିକର ଅକ୍ଷର ହାତଘଷିଆ ଆଉ ମଇଳା ସାଲୁବାଲୁ ହୋଇ ଜମାରୁ ପଢ଼ି ହଉନାହିଁ । ବହିର ପ୍ରଥମ ପୃଷ୍ଠାରେ ମରା ହୋଇଥିବା ଜଳଛବି ଖଣ୍ଡିକର ଫାଳେ କୁଆଡ଼େ ଉଡ଼ିଯାଇ-ଥିବାରୁ ଛବିଟାର ଅର୍ଥ ମଧ୍ୟ ବୁଝି ହଉ ନାହିଁ ।

ସେ ବହିଖଣ୍ଡିକ ଛଡ଼ା ବସ୍ତାନି ଭିତରେ ଅଛି କଟକ କୋହିନୂର ପ୍ରେସ୍‌ରେ ଛପା ଖଣ୍ଡେ ହନୁମାନ ପ୍ରଶ୍ନ; ଖଣ୍ଡେ ଖଡ଼ିରତ୍ନଙ୍କ ପକେଟ ପଞ୍ଜିକା ଖଣ୍ଡେ ସିଲଟ, ଖଣ୍ଡେ ଜଗନ୍ନାଥ ଛାପା, ଆଉ କଣେ ମୃତ ଡିପୁଟି କଲଟରେ ଦେଇଥିବା ଖଣ୍ଡେ ଟିଣବନ୍ଧେଇ ସାର୍ଟିଫିକେଟ ।

ବସ୍ତାନିଟି ଖୋଲି ସେ ପହିଲୁ ଟିଣବନ୍ଧା ସାର୍ଟିଫିକେଟ ଖଣ୍ଡିକୁ [illegible] ଗାମୁଛାରେ ପୋଛି ସମସ୍ତଙ୍କ ଆଖି ପଡ଼ିବା ଜାଗାରେ ଭଲ କରି ଥୋଇ[illegible] ଉପରେ ତିନି ରଙ୍ଗିଆ ଜଗନ୍ନାଥ ଛାପାଖଣ୍ଡିକ କାଢ଼େ । ସିନ୍ଦୂର ଆଉ ଚନ୍ଦନ ଲାଗି ହୋଇ ଠାକୁର ତିନିଜଣ

ପୋତ ହେଇ ପଡ଼ିଲେଣି । ସେ ଗ୍ଲାସଟିକୁ ଥରେ ମୁଣ୍ଡରେ ଛୁଆଁଇ ବସ୍ତାନି ଆଗରେ ରଖିଦିଏ । ତା'ପରେ ତାର ଟିକିଟିକି ଗହ୍ୱଡ଼ା ଆଖି ଯୋଡ଼ିକ ଠେକି ସେ ଲୋକ ଯା'ଆସ ଲକ୍ଷ୍ୟ କରେ—ଭିଡ଼ ଭିତରକୁ ଅନାଇଁ ରହେ ।

ତାର ଲମ୍ବା ହାଡ଼ୁଆ ଦେହଟା ଉପରେ ପଡ଼ିଥାଏ ଖଣ୍ଡେ ପୁରୁଣା ନାମାବଳୀ । କେନା ଖଣ୍ଡିକ ପବନରେ ଏଣେ ତେଣେ ଉଡ଼ିଗଲେ ତା' ଛାତିର ବଡ଼ ବଡ଼ ହାଡ଼ଗୁଡ଼ାକ କଳା କଳା ଲୋମ ଭିତରୁ ସଫା ବାରି ହେଇ ଦିଶନ୍ତି । ତାର ଲମ୍ବା ବାଳକେଇଟାକ କାନ ଉପରୁ ଠେକା ହେଇ ପିଠି ଉପରକୁ ଝୁଲି ପଡ଼ିଥାଏ କାନରେ ସବୁବେଳେ ଖୋସିଥାଏ ସେ ଗୋଟାଏ ଦରମଉଳା ନାଲି ଟହ ଟହ ଗେଣ୍ଡୁଫୁଲ ।

ଦିନର ଅଧିକାଂଶ ସମୟ ତାକୁ ଅଦାଲତ ପାଖରେ କମ୍ବା କଲଟେରି କଚେରୀ ସାମନା ଓସ୍ତଗଛ ମୂଳରେ ବସିଥିବାର ଦେଖାଯାଏ । ପରୀକ୍ଷାବେଳେ ସେ ସହରର କେଉଁଠି ଇସ୍କୁଲ ହତାରେ ଆସ୍ଥାନ ଜମେଇ ବସେ । କିଏ ମକଦ୍ଦମା ଜିଣିବ କି ନାଇଁ, କାହାକୁ କେତେ ମିଆଦ ହବ, କାହାର ଏ ସାଲେ କଲ୍‌ସରଉଠା ହବ କି ନାଇଁ, ଏଇପରି ନାନା ବିଷୟରେ ନାନା ଲୋକେ ତା ସହିତ ପରାମର୍ଶ କରିବାକୁ ଆସନ୍ତି । ଅନୁକୂଳ ଆଦାୟ ହୋଇସାଇଲେ ସେ ଯାହାକୁ ଯିମିତି କହିବାର କଥା, ହାତ ଦେଖି କମ୍ବା ସିଲଟରେ କୋଷ୍ଠି କାଟି ଚୁମ୍ବକରେ କହି ଦିଏ । କଥାଟି ବାଜିଗଲେ କେବେ କେବେ ଆଉରି ଦି ଚାରି ପଇସା ଗ୍ରାହକମାନେ ଖସି ହେଇ ଝୋଳ୍‌ଠାକୁ ଟଣି ଦିଅନ୍ତି । ପଇସାତକ ମୁଣ୍ଡରେ ନେଗେଇ ସେ ଗୋଟେ ମୁଦା ଟିଣ ବାକ୍‌ସ ଭିତରକୁ ଗଳେଇ ଦିଏ । କୋର୍ଟରୁ କୌଣସି ଟାଉଁଲି ଥିଲବାଲା ଲୋକ ହାକୁଟିଓ ଆଉରିଲେ ସେ ମକଦ୍ଦମା ଜିଣେଇ ଦବାନାଗି ମଶାଣିରେ ସଂକ୍ରାନ୍ତି ଦିନ ଚଣ୍ଡୀପୂଜା କରି

ତେଉଁରିଆ ତିଆରି କରି ଦବାପାଇଁ ବେଶ ମୋଟା ରକମର ଅଶ୍ମାଖୋଷା ମଧ୍ୟ ଆଦାୟ କରି ନିଏ ।

ସେଦିନ ଉଦୁଉଦିଆ ଦ୍ୱିପହର । ଖରାଦିନ । କାଠଯୋଡ଼ିର ତତଲା ବାଲି ଉପରେ ପହଁରି ପହରି ଜ୍ୟେଷ୍ଠ ମାସର ଖଇଫୁଟା ଝାଞ୍ଜି ଚଳସି ଆସୁଥାଏ । କିଲଟରି କଡ଼ର ପାଖ ନଈବନ୍ଧ ଉପରେ ଉଚା ଉଚା ଗଛ ଭିତରେ କେଇଟା ବାଦୁଡ଼ି ଖରାରେ ଦରସିଝା ହୋଇ ଚିଁ ଚିଁ ଶବ୍ଦ କରୁଛନ୍ତି । ଗୋଟାଏ ରୋଗଣା ବୁଲା କୁକୁର ହୋଇ ଆଉ ଖରା ତବତବରେ ଆଉଟି ପାଉଟି ହୋଇ ଖଣ୍ଡେ ଚେକାଗଛ ଛାଇରେ ଗୃହକାତ ନମ୍ରେଇ ଶୋଇପଡ଼ି ଜିଭ ହାଲୁ-ହାଲୁ କରି ଧଇଁ ପେଲୁଚି ।

ଗୋଟିଏ ସରୁ କାଳିଆ ହାତ ଆସ୍ତେ ଆସ୍ତେ ଜ୍ୟୋତିଷଙ୍କ ଆଡ଼କୁ ଲମ୍ବି ଆସିଲା । ହାତଟାରେ ପଲେ ବ ମ ଉଁସ ନାଇଁ, ଖାଲି ମୁନିଆ ମୁନିଆ କେଇଖଣ୍ଡ ହାଡ଼, ଗୁଡ଼ାଏ ବଡ଼ ବଡ଼ ରୁମ ଆଉ ଚମ ତଳେ କେଇଟା ଗଦ୍ଦଡ଼ିଆ ନେଳିଆ ଶିରା । ରକ୍ତହୀନ ଆଙ୍ଗୁଠି ଆଗରେ ଅସନା ନଖଗୁଡ଼ାକ ମଇଳା କଟକଟ ଦିଶୁଚି ।

ହାତ ପାପୁଲିଟାକୁ ଅନେକ ବେଳଯାଏ ସେ କଣ ପରୀକ୍ଷା କଲା । ତା'ପରେ ସେ ତାର ଦାଢ଼ି ନିଶର ଜଙ୍ଗଲ ଭିତରୁ ହାତ ଦେଖାଉଥିବା ଲୋକଟିର ମୁହଁ ଆଡ଼କୁ ଟିକିଏ ତଳେଇକରି ଚାହିଁଲା । ଲୋକଟାର ଶୁଖିଲା ପାଉଁସିଆ ମୁହଁଟା ଗୋଟାଏ ଅଜ୍ଞାତ ଆଶଙ୍କାରେ ଆହୁରି ବେଶୀ ପାଉଁଶିଆ ପଡ଼ିଗଲା ।

କଣ ଚାହଁଇଚ ?

କାଶ ଧ୍ୱାଁବାରୁ ଲୋକଟା ହଠାତ୍ କିଛି ଜବାବ ଦେଇ ପାରିଲା ନାଇଁ । ସେ ଚ ... ମ ହୋଇ ବହୁତ ବେଳଯାଏ ଖୁଁ ଖୁଁ ହୋଇ କାଶିବାକୁ ନାଗିଲା; ତା ପରେ ତାର ମୁହଁ ବାଟେ ବାହାରି ଆସିଲା

ଆଞ୍ଜୁଳାଏ ରକ୍ତ । ତାର ଦଦରା ଗ୍ଲଡର ଭଙ୍ଗା ହାଡ଼ ଗୁଡ଼ାକ ମଝିରୁ ସତେ କି ଦୁଇଖଣ୍ଡ ହୋଇଗଲା ପରି ଜଣାଗଲା । ସେ ଅଣନାଃଶ୍ବାସୀ ହୋଇ ଦୁର୍ବଳତା ଯୋଗୁଁ ଖାଲି ବରଡ଼ାପତ୍ର ପରି ଥରିବାକୁ ଲାଗିଲା ।

କଠିନ କଣ୍ଠରେ ହାତଦେଖାଳି ଜ୍ୟୋତିଷ କହିଲେ ତମେ ନ କହିଲେ କଣ ହେବ, ତମ ହାତ କହୁଚି ଯେ ତମର ରାଜଯକ୍ଷ୍ମା ହୋଇଚି । ତମ ଆୟୁ ରେଖା ବଡ଼ ଦୁର୍ବଳ ହୋଇ ଯାଉଚି ।

ଲୋକଟାର ରକ୍ତହୀନ ବିବର୍ଣ୍ଣ ମୁହଁ ଉପରେ ହଠାତ୍ ଯିମିତି କିଏ ମେଞ୍ଚାଏ କାଳି ବୋଳି ଦେଇଗଲା । ଗୋଟାଏ ଅଦୃଶ୍ୟ ଭବିଷ୍ୟତର ଅଶୁଭ ଇଙ୍ଗିତରେ ତାର ସାରା ଦେହଟା ଶୀତେଇ ଉଠିଲା । ଭୟରେ ଗ୍ଲଡଟା ତାର ଆଉରି ଜୋରରେ ପଡ଼ିଲା ଉଠିଲା ପୁଣି ବେଶି ଜୋରରେ ଏଥର ତାର କାଶ ଉଠିଲା ।

ଜ୍ୟୋତିଷ ତାର ପାପୁଲିଟି ନେଇ ଆୟୁ ରେଖାଟିକୁ ଖୁବ୍ ଜୋରରେ ନିଜ ଆଙ୍ଗୁଠିରେ ଦଳିବାକୁ ଲାଗିଲେ । ତା ପରେ ସେ ଖୁବ୍ ନିରେଖିକରି ସେଟାକୁ ଚାହିଁଲେ ।

ତାଙ୍କର ହାବଭାବରୁ ଜଣା ଯାଉଥିଲା, ଯିମିତି ସେଇ ମଇଳା ହାତର ସରୁ ରେଖାଟା ଗୋଟାଏ ଚୋରା ନାଳର ଧାର । ପଡ଼ିଆ ଦେହରେ କେଉଁଠି ମିଶି ହଜିଗଲା ପରି ହଠାତ୍ କୁଆଡ଼େ ସେଇ ପାପୁଲି ଭିତରେ ନିଭି ସମତଳ ହୋଇ ଯାଇଚି । ଆଉ ସେ ଯିମିତି ସେଇ ପାପୁଲିଟାକୁ ସଫା କରି ତା ଭିତରୁ ସେଇ ନିଭିଲା ରେଖାଟିକୁ ଖୋଳି ବାହାର କରିବାକୁ ଚେଷ୍ଟା କରୁଛନ୍ତି ।

ଜ୍ୟୋତିଷଙ୍କ ଆଖିରେ ରେଖାଟା ଧରା ଦେଉ ନାହିଁ ଦେଖି ରୋଗୀଟି ଅଧିକ ନିସ୍ତେଜ ହୋଇ ପଡ଼ିଲା; ... ଖୁଖିଲା ଆଖିପତା ଦୁଇଟା ଉପରେ ବେଶି ବେଶି ଗହିଡ଼ିଆ ଦେଖାଗଲା । ତାର ସାନ

ମଇଳା ମୁହଁଟା କ୍ରମେ ସ୍ପଷ୍ଟ ହୋଇଯାଉ ଛୋଟିଏ ସାନ ପିଲାର ମୁହଁପରି ଜଣାଗଲା ।

ମୁଁ ଜଣ ତା' ହେଲେ ବଞ୍ଚିବ ନାହିଁ ଅବଧାନେ ?

ବହୁତ ସମୟ ପରେ ନିଜର ଭାବାବେଗକୁ ସମ୍ଭାଳି ରୋଗୀଟି ପଚାରିଲା । କଣ୍ଠରେ ତାର ଉତ୍କଣ୍ଠାର ଚରମ ।

ଜ୍ୟୋତିଷ ହାତଟାକୁ ଆଉ ଥରେ ଭଲ କରି ଦେଖିଲେ । ତା'ପରେ କଣ କହିବେ ବୋଲି ମୁହଁ ଟେକିଲେ । ତାଙ୍କ ଓଠରେ କ୍ରୂର ଉଦାସୀନ ହସ—ଆଖି ଦି'ଟାରେ ଅଦୃଷ୍ଟର ନିଷ୍ଠୁର ବଜ୍ରପ ପରି ଗୋଟାଏ ତୀକ୍ଷ୍ଣ ଇଙ୍ଗିତ ।

ରୋଗୀର ଆଉ ତାଙ୍କ ମୁହଁକୁ ଅନେଇବାକୁ ସାହସ ହେଲା ନାହିଁ । ସେ ତଳକୁ ମୁହଁ ପୋତିଦେଲା । ଦେଖିଲା କାନ୍ଥ ପାଖେ ଥୁଆ ହୋଇଚି ସେଇ ଚିନେରଙ୍ଗିଆ ଜଗନ୍ନାଥ ଫଟୋଟା । ଚନ୍ଦନ ଆଉ ସିନ୍ଦୂରର ପାହାଡ଼ ତଳେ ସେଇ ଦୁର୍ବୋଧ ଦେବତାଙ୍କର ଅସ୍ପଷ୍ଟ ମୂର୍ତ୍ତିଟା ତାର ଅଦେଖା ଭବିଷ୍ୟତ ପରି ତା ଆଖିକୁ କଳା ଆଉ ରହସ୍ୟମୟ ଦେଖାଗଲା । ସେ ଆଉ ଠାକୁରଙ୍କ ଆଡ଼କୁ ମୁହଁ ଫେରିଲା ନାହିଁ । ସେଠାରୁ ଆଖି ଫେରାଇ ନେଇ ସେ ବସ୍ତାନି ଭିତରେ ଥିବା ବହିଗୁଡ଼ାକୁ ଅନାଇବାକୁ ଲାଗିଲା । କଳା ମସିଆ ବହିର ପୁରାତନ ପୃଷ୍ଠାଗୁଡ଼ାକ ତା ମନରେ ଆଉରି ଭୟ ସଞ୍ଚାର କଲେ । କୋଉ ଅନାଦି କାଳର ମଇଳା ଆଉ ତେଲିଆ କାନ୍ଥ ଭିତରୁ ସେଇ ବହିର ଦାଉଡ଼ିଆ ଅକ୍ଷରଗୁଡ଼ାକ ତାକୁ ତାର ନିଭିଆସୁଥିବା ଝାପ୍‌ସା ଅସ୍ତିତ୍ୱର କଥା ସ୍ମରଣ କରେଇ ଦେଲେ । ସେ ତରତରରେ ସେଠୁ ପୁଣି ଆଖି ଫେରାଇ ନେଇ ସିଲଟଟାକୁ ଦେଖିବାକୁ ଲାଗିଲା । କଳା ସିଲଟ ଉପରେ ଲେଖା ହୋଇଥିବା ଅଡ଼ୁଆ ତଡ଼ୁଆ ଦୁର୍ବୋଧ ଚାର-

ଗୁଡ଼ାକରୁ ସେ କମା କିଛି ବୁଝି ନ ପାରିଲେ ମଧ୍ୟ ସେଇ ଅବୁଝା ଅଙ୍କନଗୁଡ଼ିକୁ ତନ୍ନ ତନ୍ନ କରି ପରୀକ୍ଷା କରିବାକୁ ଲାଗିଲା ।

ଜ୍ୟୋତିଷ ଗଳାଖଙ୍କାର ମାଇଲେ··· ।

ସେଗୀଟି ବୁଝି ପାରିଲା ସେ ଏଥର କ'ଣ କହିବେ । କିନ୍ତୁ ଶୁଣିବା ପେଇଁ ତାକୁ ଡର ମାଡ଼ିଲା । ସେ ମୁହଁ ଟେକି ଥରେ ଜ୍ୟୋତିଷଙ୍କ ଆଡ଼କୁ ଚାହିଁଲା, ଜ୍ୟୋତିଷଙ୍କ ଚଉଡ଼ା କପାଳର ଦୁଇ କଡ଼ରେ ଯେଉଁ ଉଗ୍ର ଉଗ୍ର ଶିର ଦୁଇଟା ଶିଙ୍ଗ ପରି ଚମଡ଼ା ତଳୁ ଫୁଟି ବାହାରିଛି, ସେ ଦୁଇଟା ହଠାତ୍ ଟିକିଏ ଥରି ଉଠିଲେ । ତାଙ୍କ କାନରେ ଖୋସା ହୋଇଥିବା ନାଲି ଗେଣ୍ଡୁ ଫୁଲଟା ହଠାତ୍ ଟିକିଏ ହଲିଗଲା । ସେ କଥା କହିଲେ । ତାଙ୍କର ପ୍ରସିଦ୍ଧ ଗାଲ-ହାଡ଼ ତଳେ ଦିଶୁଥିବା ମାଉଁସର ଗହ୍ୱର ଆଗ ଦୁଇଟା ହଠାତ୍ ପୂରିଉଠି ପୁଣି ଖାଲି ହୋଇଗଲା । ମୁହଁର ମାଂସପେଶୀ ଗୁଡ଼ାକ ଫୁଲି ଉଠିଲା । ସେଗୀଟି ଶୁଣିଲା ତାଙ୍କ କଣ୍ଠର ଆବାଜ—

ତମ ହାତ କହୁଚି —

ତ ର ହାତ କଣ କହୁଚି ? କେଉଁ ଭୟଙ୍କର ଇତିହାସ ସେଥିରେ ଲେଖା ଅଛି, ତାହା ଶୁଣିବା ଲାଗି ତାର କମା ଇଚ୍ଛା ହଉ ନ ଥିଲା । ତଥାପି ତାକୁ ଶୁଣିବାକୁ ହେଲା ।

ଜ୍ୟୋତିଷ କହିଲେ—ତମର ଗୋଟିଏ ମାର୍କ ଅଛି । ଶୁକ୍ରମହାଦଶାଙ୍କ ରେଖଟା ତମ ହାତରେ ତଳକୁ ତଳକୁ ପଶି ଯାଉଚି । ଏଥି ସ୍ୱାସ୍ଥ୍ୟ ପକ୍ଷରେ ଭଲ ନୁହେଁ ।

ସେଗୀଟି କଳାକାଠ ପଡ଼ିଗଲା । ବିଚାରକଙ୍କ ମୁହଁରୁ ମୃତ୍ୟୁଦଣ୍ଡ ଶୁଣିବା ଆଗରୁ କଠଗଡ଼ାରେ ଆସାମୀର ମୁହଁ ଯେମିତି ଶୁଖି ସେତେଲା ପଡ଼ିଯାଏ, ସେଗୀଟି ଠିକ୍ ସେମିତି ଶୁଖି ବିବର୍ଣ୍ଣ ହୋଇଗଲା ।

ତାର କାଶର ବେଗ ଭୟଙ୍କର ଭାବରେ ବଢ଼ି ଉଠିଲା—ସେ କାଶି କାଶି ଲୋତୃକୋତ୍ମ ହୋଇ ଭୂଇଁ ସାଉଁଟିବାକୁ ଲାଗିଲା ।

କିଛି ସମୟ ପରେ ସେ ପୁଣି ଥିର ହୋଇ ବସିଲା । ପଚାରିଲା—ମୁଁ କେତେଦିନ ବଞ୍ଚିବି ? ଏ-ସୁ ମାଘମାସରେ ମୋ ଝିଅକୁ ବାହା ଦେବି ବୋଲି ଦିନ ଧରିଚି । ସେଇ ଗୋଟିଏ ବୋଲି ପିଲା, ଗୋରୁ ନାଙ୍ଗ ଭଳିଆ ବଢ଼ିଯାଇଛି ହେବ । ତାକୁ ହାତକୁ ଦିହାତ କରି ଦେଲେ ମୋର ଅବଧାନେ ଛୁଟି । ତୁମକୁ କେହିବି ହେଉଚି, ଟିକିଏ ଭଲକରି ହାତ ଦେଖି କହିବ ଦେଖି ମୁଁ ଆଉ ମାସ ରହିବି—

ତା କଣ୍ଠସ୍ୱର ଥରୁଥିଲା । ତାର ଅସହାୟ ଭାବ ଦେଖି ଜ୍ୟୋତିଷଙ୍କର ନିର୍ମମ ମୁହଁରେ ଟିକିଏ ଉତ୍ତାପ ଫେରି ଆସିଲା । ସେ ଥତମତ ହୋଇଗଲେ ।

ତାଙ୍କର କଳା ଦାଢ଼ି ଉପରେ ଜଳୁଥିବା ଆଖି ଦି'ଟା ମମତାରେ ଟିକିଏ ଉଜ୍ଜ୍ୱଳ ଦେଖାଗଲା । ସେ କଣ କହିବେ ଟିକିଏ ଭାବିବାକୁ ଲାଗିଲେ । ତା ପରେ ବହୁତ ବେଳଯାଏ ବହି ଦେଖି ଢୋକ ଗିଳି ଟିକିଏ ମୁରୁକି ହସା ଦେଇ କହିଲେ :—

ତୁ ଅନେକ ଦିନ ବଞ୍ଚିବୁ । ଆସନ୍ତା ଦୁଇ ବର୍ଷ ଭିତରେ କେହି ତୋ ଦିହରେ ଦାଗଟାଏ ବି ଲାଗି ପାରିବ ନାହିଁ । ମା ଚଣ୍ଡୀଙ୍କ ଦୟାରୁ ତୋର ସବୁ ରୋଗବୈରାଗ କୁଆଡ଼େ ରାଣ ଦେଲାପରି ଉଡ଼ିଭଇ ଯିବ । ତୁ ଏଇ ଅଷ୍ଟଧାତୁ ମନ୍ତୁରା ତେଉଁରିଆ ବାନ୍ଧ । ନେ ଏଣ ସଞ୍ଜାଣ୍ଡ ଦିନ ବହୁତ ଗୁଣିଗାରେଡ଼ି କରି, ନିଜ ଖାଇବି ଧାଡ଼ରୁ ଚକ୍ରବାଳ ହୋଇ ମଶାଣିଚଣ୍ଡୀ ପାଖରୁ ଯାକୁ ଆଣିଚି । କାଠପାଣିପରି ସବୁ ବଡ଼ ବଡ଼ ଦରିଦ୍ରକୁ ଏ ତେଉଁରିଆ ଆଗ୍ଟ କରିଦେବ ।

ସେ ରୋଗୀର ଖାଇବି ବାହାରେ ତେଉଁରିଆଟିକୁ ମନ୍ତୁରେଇ ଡୋରି ଖଣ୍ଡିକରେ ବାନ୍ଧିଦେଲେ । ରୋଗୀଟିର ବିବର୍ଣ୍ଣ ମୁହଁରେ

ପୁଣି ରକ୍ତ ଫେରିଆସିଲା । ତାର ମଇଳା ଗାଲରେ ମାଂସର ଝଲକ ଦେଖାଗଲା । ହସରେ ଆଖି ଦିଟା ତାର ପୁଣି ନାଚି ଉଠିଲା । ସେ ଖୁସି ହୋଇ ଜ୍ୟୋତିଷଙ୍କ ଗୋଡ଼ତଳେ ମୁଣ୍ଡିଆମାରି କହିଲା—

ସତରେ, ସତରେ ମୁଁ ଭଲ ହୋଇଯିବି ଗୋସେଇଁ ମହାପୁରୁ ? ସବୁ ଠାକୁରଙ୍କ ଇଚ୍ଛା । ଗତ ସାଲ କେତେ ମିହନ୍ତ କରି ପଡ଼ିଆ ଭୂଇଁ ଦି'ମାଣକରେ ଗାର ଦେଇ ଉଠିଆ କରିଥିଲି । ଠାକୁରେ ମୋତେ ବର୍ଷେ ଗୃହିଟା ବଞ୍ଚେଇ ରଖିଲେ ସେଥିରୁ ଟିକି ମୁଁ ସୁନା ଫଳେଇବି !!

ତା' ପରେ ସେ ଠାକୁରାଣୀଙ୍କ ପୂଜା ପାଠ ପାଇଁ ଗୋଟିଏ ଟଙ୍କା ଜ୍ୟୋତିଷଙ୍କ ଗୋଡ଼ତଳେ ରଖିଦେଇ ସେଠୁ ଚାଲିଗଲା । ତାର ଚାଲିରୁ ମନେ ହେଲା, ତାର ଅସାଧ ବେମାରି ସତକୁ ସତ ଯେମିତି କିଛି ସମୟ ପାଇଁ ଭଲ ହୋଇ ଯାଇଚି । ତା ଘରବାଡ଼ି କଥାବାର୍ତ୍ତାରେ ବଞ୍ଚିବାର ଉତ୍ତପ୍ତ ଆଗ୍ରହ ପୁଣି ଏତେ ଜୋରରେ ଫୁଟିଉଠିଲା ଯେ, ତାର ସାଙ୍ଗସାଥୀମାନେ ତାକୁ ସେ ଦିନ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ଜ୍ୟୋତିଷ ତା ଖୁସିରେ ନିଜେ ଖୁସି ହୋଇ ତାକୁ ଆଶୀର୍ବାଦ କଲେ—

"ମା ମଶାଣିଚଣ୍ଡୀ ତୋର ମଙ୍ଗଳ କରନ୍ତୁ ।"

ରୋଗୀଟି ଚାଲିଯିବା ପରେ ମୋର ସାରା ଅନ୍ତରଟା ସେଇ ହାତ ଦେଖାଳି ଜ୍ୟୋତିଷର ପେଶାଦାରି ଭଣ୍ଡାମି ବିରୁଦ୍ଧରେ ଘୃଣା ଆଉ ରାଗରେ ପୂରିଉଠିଲା । ମୁଁ ତାକୁ ପୁଲିସରେ ଦବା ନାଗି ମନେ ମନେ ସଙ୍କଳ୍ପ କରି ସେଦିନ ସେଠାରୁ ଚାଲି ଆସିଲି । ସେଇଦିନୁ ମୁଁ ସେଇ ଜ୍ୟୋତିଷର ଗତିବିଧି ବିଶେଷ ସତର୍କତାର ସହିତ ଲକ୍ଷ୍ୟ କରିବାକୁ ଲାଗିଲି ।

ତା' ପରେ ପଡ଼େ । ଧୂଷୁମାସର ଦୋଳିଆ ଅପରାହ୍ଣ ଧୂଆଁଳିଆ ଆକାଶ ଦେହରେ ଧୀରେ ଧୀରେ ନଇଁ ଆସୁଚି । ମୁଁ ଯାଉଁ ଯାଉଁ ଦେଖିଲି କଲେଜ ମାଝରେ ଗୋଟିଏ ଗଛମୂଳରେ ବସି ସେଇ ଜ୍ୟୋତିଷଟା ଜଣେ ଯୁବକର ହାତ ଦେଖୁଚି ।

ଯୁବକଟି ବୋଧହୁଏ କଲେଜର ଛାତ୍ର । ବୟସ ଅନୁପାତରେ ତାର ଶରୀରର ଗଠନ ଅତ୍ୟନ୍ତ ରୋଗା ଆଉ ଦୁର୍ବଳ ବୋଧ ହଉଚି । ଛାତ୍ରଟିର ଭାବପ୍ରବଣ ଆଖି ଦୁଇଟି ଭିତରେ ଯିମିତି ତାର ଜୀବନର ବ୍ୟର୍ଥ ଇତିହାସ ପ୍ରକାଶ ଲାଭ କରୁଚି ।

ଛାତ୍ରଟି ପଚାରିଲା—ତମେ କହ, ସେ ମୋତେ ଭଲପାଏ କି ନାହିଁ ?

ଜ୍ୟୋତିଷ ମୁରୁକି ହସି ଛାତ୍ରଟିର ବ୍ୟାକୁଳତା ଲକ୍ଷ୍ୟ କଲେ । ତାର ସମସ୍ତ ମନସ୍ତତ୍ତ୍ୱ ତାଙ୍କର ତୀକ୍ଷ୍ଣ ସତର୍କ ଦୃଷ୍ଟି ଆଗରେ ମୁହୂର୍ତ୍ତକରେ ଅଭିବ୍ୟକ୍ତ ହୋଇପଡ଼ିଲା ।

ସେ ହାତଟାକୁ କିଛି ସମୟ ଓଲଟ ପାଲଟ କରି କହିଲେ— ତମ ହାତରେ ଗୋଟିଏ ଶଙ୍ଖ ଅଛି । ପାଞ୍ଚଟା ଶଙ୍ଖ ଥିଲେ ରାଜ୍ୟଲାଭ, ଧନଲାଭ ଆଉ ପୁତ୍ରଲାଭ ନିଶ୍ଚୟ ।

ଅସହିଷ୍ଣୁ ଭାବରେ ଛାତ୍ରଟି କହିଲା—ମୋର ରାଜ୍ୟ, ଧନ, ପୁତ୍ର କିଛି ଦରକାର ନାହିଁ । ତମେ କହ, ମୁଁ ତାକୁ ପାଇବି କି ନାହିଁ । ମୁଁ ତାକୁ ଭଲପାଏ । କିନ୍ତୁ ମନେ ମନେ ଭଲପାଏ । ମୁଁ ତାକୁ କେବେ ଭଲପାଏ ବୋଲି କହିନାହିଁ । କହିବି ବି ନାହିଁ ।

ତୀକ୍ଷ୍ଣ ଜ୍ୟୋତିଷ ସବୁକଥା ମୁହୂର୍ତ୍ତକରେ ଠଉରାଇ ନେଲେ । ଏଭଳି ପ୍ରେମର ପରିଣତି ଯେ କେଉଁଠି, ଏକଥା ବୁଝିବାକୁ ତାଙ୍କୁ ମିନିଟିଏ ସୁଦ୍ଧା ବିଳମ୍ବ ହେଲା ନାହିଁ ।

ହଠାତ୍ ଜ୍ୟୋତିଷ ବଡ଼ ଗମ୍ଭୀର ହୋଇଗଲେ । ଜିଜ୍ଞାସାକାରୀର ଉତ୍କଣ୍ଠା ବଢ଼ାଇବା ନାଗି ଯେତେଦୂର ସମ୍ଭବ ବିଳମ୍ବ କରି ଅନେକ ବେଳ ପରେ କହିଲେ—

ତମ ହାତ କହୁଚି—

କଣ କହୁଚି ? ଉଦ୍‌ଗ୍ରୀବ ହୋଇ ସୁନେଁଟି ପଚାରିଲା । ତାର ବ୍ୟାକୁଳ କଣ୍ଠସ୍ୱରରୁ ମନେ ହେଉଥିଲା, ସତେ କି ଯିମିତି ଜ୍ୟୋତିଷଙ୍କ କଥା ପଦକରେ ତାର ସମସ୍ତ ଭବିଷ୍ୟତ ଝୁଲୁଚି । 'ତମ ହାତରେ ବିଳମ୍ବରେ ବିବାହ ଲେଖିଚି ।' ଜ୍ୟୋତିଷ ଉତ୍ତର ଦେଲେ ।

ଅସହିଷ୍ଣୁ କଣ୍ଠରେ ସୁନେ କହିଲା—ମୁଁ ବିବାହକୁ କେୟାର୍ କରେ ନାହିଁ । ମୁଁ ବିବାହ କରିବାକୁ ଚାହେଁ ନାହିଁ । ମୁଁ ଚାହେଁ ତାକୁ ଭଲପାଇବାକୁ । ବିବାହଟା ତା ତୁଳନାରେ କେତେ ଶ୍ରେଷ୍ଠ ଜିନିଷ । କହ ତମେ, ସେ ମତେ ଭଲ ପାଇବ କି ନାହିଁ । ସେତିକି କେବଳ ମୋର ପ୍ରଶ୍ନ—

ଜ୍ୟୋତିଷ ନୀରବ ହେଲେ ଅନେକ ବେଳଯାଏ । କଣ ରେଖା କାଟି ଆଙ୍ଗୁଠିରେ ଗଣାଗଣି କରି କହିଲେ—ହଁ, ତୁମକୁ ସେ ସୁଖ ପାଏ । ପ୍ରୀତି ଶ୍ୟାମଳ ବର୍ଣ୍ଣ, ତମ ସାଙ୍ଗରେ ପଢ଼େ—ନା ?

ଠିକ୍ ଠିକ୍ । ସୁନେଟି ଲମ୍ଫ ଦେଇ ଉଠିଲା । ତାର ରୋଗା ପାଣ୍ଡୁର ମୁହଁଟି ଖୁସିରେ ଉଜ୍ଜ୍ୱଳ ପଡ଼ିଲା ।

ତା ପରେ ସେ ଟିକିଏ ସନ୍ଦେହପୂର୍ଣ୍ଣ କଣ୍ଠରେ କହିଲା, ସେ କିନ୍ତୁ ମୋର ଉପର କ୍ଲାସରେ ପଢ଼େ ।

ଜ୍ୟୋତିଷ କହିଲେ—ଯେଉଁ କ୍ଲାସରେ ପଢ଼ୁ, ସେ ତମକୁ ସୁଖ ପାଏ । ମନେ ମନେ ସେ ତମରି କଥା ଭାବେ । ତମ ଛଡ଼ା ସେ ଦୁନିଆରେ ଆଉ କାହାକୁ ଦେଖିପାରେ ନାହିଁ । ତା' ପରେ ସୁନେଟିର

କପାଳରେ ହାତମାରି କହିଲେ—ତମ କପାଳରେ ଏ ଯେଉଁ ବିଦ୍ୟା ରେଖା ଫୁଟିଛି, ତାର କରାମତି ଅନେକ—ତା ପରେ ଏ ଯେଉଁ ଧନ ରେଖା—

ବାଧା ଦେଇ ଗୁରୁଜି କହିଲା—ବିଦ୍ୟା ଫିଦ୍ୟା, ଧନ ଫନକୁ ମୁଁ ଜମା କେୟାର୍ କରେ ନାହିଁ । ମୁଁ ଚାହେଁ ସେ ମତେ ଭଲ-ପାଇବ, ଏକୁଟିଆ ମତେଇ ଖାଲି ଭଲପାଇବ ।

ଜ୍ୟୋତିଷ ତା' କଥାକୁ ସମର୍ଥନ କରି କହିଲେ, ନିଶ୍ଚୟ ସେ ତମକୁ ଭଲପାଇବ । ବାବୁ, ନିଶ୍ଚୟ ଭଲପାଇବ । ନ ପାଇବ ତ ମୁଁ ହାତଦେଖା ବେଉସା ଏକାବେଳେ ଛାଡ଼ିଦେବି । ବାଜି ରହିଲା ।

ଗୁରୁଜି ପକେଟରୁ ଗୋଟିଏ ଅଧୁଲି ବାହାର କରି ଜ୍ୟୋତିଷଙ୍କ ହାତକୁ ବଢ଼େଇ ଦେଇ ଯିବାପାଇଁ ଛିଡ଼ାହେଲା ।

ଜ୍ୟୋତିଷ କହିଲେ—ଅଁମେଇସିଆ ଦିନ ରାତିରେ ତମେ ମୋ ସଙ୍ଗେ କାଳିଆବୋଦା ମଶାଣିକୁ ଯାଇପାରିବ ତ ମୁଁ ତମକୁ ଏକ କାଠଧୂଳି ଦେବି । ସେ ଧୂଳିକୁ ନେଇ ତମେ ତା ପଛେ ପଛେ ଯିବ । ଚାଲିବାବେଳେ ଯେତେବେଳେ ସେ ବାଆଁ ପାଦ ଉପରକୁ ଉଠେଇଥିବ—ଭୂଇଁରେ ଦେଇ ନ ଥିବ, ଠିକ୍ ସେତିକବେଳେ ତା ଉପରକୁ ସେ ମନ୍ତୁରା ଧୂଳି ତିନିଥର ବଶୀକରଣ ମନ୍ତ୍ର ପଢ଼ି ଫୋପାଡ଼ି ଦେବ । ଦେଖିବ ସେ ଗୋଟିପଣେ ତମରି ହୋଇଯିବ । ହଁ, ଏଥିପାଇଁ ଠାକୁରାଣୀଙ୍କ ନାଗି ତିନି କଡ଼ା ନଡ଼ିଆ, ସେରେ ଅରୁଆ ଚାଉଳ, ପାଏ ଗୁଆଘିଅ, ଖଣ୍ଡେ ତିନିହାତ ଗାମୁଛା ଆଉ ବାରଆଙ୍ଗୁଳି ଲମ୍ବ ସାଲୁ—

ଗୁରୁଜି କହିଲା—ଆଚ୍ଛା, ଆଚ୍ଛା, ସେ ପରି କଥା, ପରେ ଦେଖାଯିବ । ଏତିକି କହି ସେଠୁ ଉଠି ଚାଲିଆସିଲା ।

ମୁଁ ତା ପଛେ ପଛେ କଟ୍ଟୁ ବାଟ ଯାଇ ତାକୁ ଡାକିଲି । ମୁଁ ଯେ ଏତେବେଳଯାଏ ତା ପାଖରେ ଛିଡ଼ା ହୋଇ ଜ୍ୟୋତିଷ ସହିତ ତାର ସବୁ କଥାବାର୍ତ୍ତା ଶୁଣିଥିଲି, ଏ କଥାକୁ ତାର ହୋସ ନ ଥିଲି । ସେ ମତେ ଦେଖି ଟିକିଏ ଲଜ୍ଜିତ ହୋଇ ଛିଡ଼ାହେଲି ।

ମୁଁ ତା ପାଖକୁ ଯାଇ କହିଲି—ଆପଣଙ୍କ ସାଙ୍ଗେ ମୋର ଟିକିଏ କାମ ଅଛି । ଅପଣଙ୍କୁ ଗୋଟାଏ ମୋକଦ୍ଦମାରେ ସାକ୍ଷୀ ହବାକୁ ହବ ।

ସାକ୍ଷୀ ! ଗ୍ଲୁନତି ଆଶ୍ଚର୍ଯ୍ୟ ହୋଇଗଲି ।

ହଁ, ସାକ୍ଷୀ । ସର୍ବସାଧାରଣଙ୍କୁ ଠକୁଥିବା ଯୋଗୁଁ ମୁଁ ଏଇଭଣ୍ଡ ଜ୍ୟୋତିଷ ନାଁରେ କାଲି ମୋକଦ୍ଦମା ଦାଏର କରୁଚି । ଆପଣ ସେ ମୋକଦ୍ଦମାରେ ସାକ୍ଷୀ ହେବେ ।

ସର୍ବସାଧାରଣଙ୍କର ସେ କଣ କ୍ଷତି କରୁଛି ? ଦରଦମିଶା କଣ୍ଠରେ ଗ୍ଲୁନତି ପଚାରିଲି ।

ମୁଁ କହିଲି—ଅନେକ କ୍ଷତି କରୁଚି । ଆପଣ କଣ ବୁଝିପାରୁ ନାହାନ୍ତି—ଏହାର ମିଛ କଥାରେ କେତେ ନିରୀହ ଲୋକଙ୍କର ସର୍ବନାଶ ହବ । କେତେ ଭଦ୍ରଲୋକ ଯେ ଇଆ କଥାରେ ବଡ଼ ବଡ଼ ଭରସା କରି ଶେଷରେ ନିରାଶ ହୋଇ ପୋଟାସିୟମ୍ ସାଇନାଇଡ୍ ଖାଇବେ, କବା କାଲି ମୋରଫିଆ ଇଞ୍ଜେକ୍ସନ ନେବେ କିମ୍ବା କଲେଜ ବିଲ୍ଡିଂର ଉପରତାଲାରୁ ତଳକୁ ଡେଉଁପଡ଼ି ଆତ୍ମହତ୍ୟା କରିବେ, ଆପଣ କଣ ସେ କଥା ଦୂରଦୃଷ୍ଟିରେ ଦେଖିପାରୁ ନାହାନ୍ତି ! ଏ ଗୋଟିଏ ରୀତିମତ ପବ୍ଲିକ୍ ନୁଇସେନ୍ସ ! ଏହାର ବିଚାର ହେବା ଦରକାର ।

ଗ୍ରୁବଟି ବିଚାରା ଜ୍ୟୋତିଷଟି ପାଇଁ ଦୁଃଖିତ ହୋଇ କହିଲା—ୟାର ବା ଦୋଷ କଣ ! ଲୋକେ ୟା କଥା ବିଶ୍ୱାସ କରନ୍ତି କାଇଁକି ? ଦୋଷ ତ ସେଇମାନଙ୍କର ।

ମୁଁ ଟିକିଏ ବିରକ୍ତ ହୋଇ କହିଲି—ଆପଣଙ୍କ ଭଳି ଶିକ୍ଷିତ ପଢ଼ୁଆ ଯୁବକ ଯେତେବେଳେ ୟା କଥାରେ ଭୁଲି ଯାଉଛନ୍ତି, ସେତେବେଳେ ସାଧାରଣ ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଲୋକଙ୍କୁ ବା ଦୋଷ ଦିଆଯିବ କେଉଁ କାରଣରୁ ? ଆପଣ ଯଦି ଏ ସବୁ ଅନ୍ଧ କୁସଂସ୍କାରକୁ ଉତ୍ସାହିତ କରନ୍ତି—

ଗ୍ରୁବଟି ଅପରାଧୀଙ୍କ ଭଳି କିଛିକ୍ଷଣ ନୀରବ ହୋଇ ରହିଲା । ତା ପରେ ଛଳ ଛଳ ଆଖିରେ କହିଲା—ଆପଣ ମତେ ଯେତେ ବୋକା ବୋଲି ଭାବୁଛନ୍ତି, ମୁଁ କିନ୍ତୁ ବାସ୍ତବିକ୍ ସେତେ ବୋକା ନୁହେଁ । ମୁଁ ଫୋର୍ଥ ଇଅର ସାଏନ୍‌ସର ଗ୍ରୁବ, ଫିଜିକ୍ସରେ ଅନର୍ସ । ମୁଁ ଜଣେ ଖାଣ୍ଟି ଜଡ଼ବାଦୀ । ମୁଁ କୁସଂସ୍କାରକୁ ଘୃଣା କରେ, ଅନ୍ଧ ଆଧ୍ୟାତ୍ମିକତା ବା ଅଦୃଷ୍ଟବାଦର ମୋ ପାଖରେ ଆଦୌ କିଛି ଅର୍ଥ ନାହିଁ । କିନ୍ତୁ ମୁଁ କାହିଁକି ଏ ଭଣ୍ଡ ମିଥ୍ୟାବାଦୀ ଜ୍ୟୋତିଷଟାକୁ ହାତ ଦେଖାଏ ? ହଁ, ଆପଣ ସେ କଥା ପଚାରି ପାରନ୍ତି । କିନ୍ତୁ ମୁଁ ଯେଉଁ କୈଫିୟତ୍ ଦେବି, ତାର ମର୍ମ ଆପଣଙ୍କ ଭଳି ଅକ୍ଷତ ଲୋକ ଜମାରୁ କିଛି ଉପଲବ୍ଧି କରିପାରିବ ନାହିଁ—ପସନ୍ଦ କରିବା ତ ଦୂରର କଥା । ଯାହାର ହୃଦୟରେ କ୍ଷତ ଅଛି, ଯାହାର ମନର କୌଣସି ଅଂଶ କିଛି ଗୋଟାଏ ଆଘାତ ପାଇ ଭାଙ୍ଗି ପଡ଼ିଛି, ସେଇ କେବଳ ମୋର ଉତ୍ତରର ମାନେ ବୁଝିପାରିବ ।

ତା'ପରେ କିଛି ସମୟ ଚୁପ୍ ରହି କହିଲା—ଏ ଜ୍ୟୋତିଷଟା ଯେ ଗୋଟାଏ ପ୍ରକାଣ୍ଡ ଜୁଆଚୋର ଆଉ ମିଥ୍ୟାବାଦୀ—ତାର ସବୁ କଥା ଯେ ମୂଳରୁ କେବଳ ଫାଙ୍କି ଆଉ ମନଗଢ଼ା, ଏ କଥା ମୋ

ଅପେକ୍ଷା ଆଉ କେହି ହୁଏତ ଏତେ ଭଲକରି ଜାଣେ ନାହିଁ । ଆଜିକାଲିକାର କଲେଜ ପିଲାଙ୍କ ଢଙ୍ଗଢାଙ୍ଗ ଆଉ ସେମାନଙ୍କ ମନର ସାଧାରଣ ବୈରାମ କଥା ଯିଏ ଜାଣେ, ସେ ଇମିତି ବହୁତ ଭବିଷ୍ୟତ 'ବାଣୀ ଅନ୍ଦାଜରେ କହିଦେଇ ପାରିବ । ସେଥିରେ କିଛି ବାହାଦୁରୀ ନାହିଁ । ଏଗୁଡ଼ାକ ତୁଚ୍ଛା ମିଛ, ଖାଲି ଧପାବାଜି । କିନ୍ତୁ ଏଇ ମିଥ୍ୟାର ପୁଣି ମଣିଷ ନିକଟରେ ବେଳେ ବେଳେ ଗୋଟାଏ ମୂଲ୍ୟ ଅଛି । ମଣିଷ ତାର ଭଙ୍ଗା ମନକୁ ଯୋଡ଼ିବା ପାଇଁ ଅନେକ ସମୟରେ ଏଇ ମିଥ୍ୟାର ପ୍ରଲେପ ଚାହେଁ—ଏକ ଲୋଭମୟ ମଧୁର ମିଥ୍ୟାର ନିଶାରେ ନିଷ୍ଠୁର ବାସ୍ତବତାକୁ ଭୁଲି ରହିବାକୁ ଚାହେଁ ।

ମୋ' କଣ୍ଠରୁ ଅଭିଯୋଗ ମରି ଯାଇଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—ଆପଣ କଣ ଜାଣି ଶୁଣି ତା ହେଲେ ନିଜକୁ ଇମିତି ଠକେଇ ହବାକୁ ଦିଅନ୍ତି ?

ଗ୍ରୀନ୍‌ଟି କହିଲା—(ମଣିଷ ତାର ଦୁଃଖ ଯାତନାଗୁଡ଼ାକୁ କିଛି ସମୟ ଭୁଲିଯିବାପାଇଁ ଜାଣିଶୁଣି ସିନେମା ଦେଖେ, ମଦ ଖାଏ, ଜୁଆଖେଳେ, ଆଉ କେତେ କଣ କାମ କରି ଅଜସ୍ର ପଇସା ଖର୍ଚ୍ଚ କରେ । ମୁଁ ସେଇପରି ମୋର ମନର ଭଙ୍ଗା ଜାଗାଟାକୁ ଯୋଡ଼ିବା ପାଇଁ, ପଇସା ଖର୍ଚ୍ଚ କରି ନିଜକୁ ପ୍ରତାରିତ କରାଏ—ଏକ ମୂଲ୍ୟବାନ୍ ମିଥ୍ୟାର ଆଶ୍ରୟ ଖୋଜେ । ମୁଁ ଜାଣେ ବାସ୍ତବତା ମତେ କିଛି ଦେଇପାରିବ ନାହିଁ । ପରିସ୍ଥିତିର ନିର୍ମମ ଚାପରେ ଆମେ ଦହେଁ ଯେ କେହି କାହାରିକୁ ପାଇପାରିବୁଁ ନାହିଁ, ଏକଥା ମତେ ଅଜଣା ନାହିଁ । ସେଥିପାଇଁ ମୁଁ ଏଇ ମଧୁର ମିଥ୍ୟାର କ୍ଷଣିକ ନିଶାରେ ଗୋଟାଏ ରକମ ପାଇବାର ଆନନ୍ଦ ଉପଭୋଗ କରେ । ତାକୁ ସମାଲୋଚନା କରିବାର ଦୁଃସାହସ ମୋର ନାହିଁ ।

ମୁଁ କହିଲି—ବେଶ୍ ତ । ତମେ ଯାହାକୁ ଭଲପାଅ, ତାକୁ ପାଇବାକୁ ଚାହଁ ତ, ତା ପାଖକୁ ଯାଇ ସାହସର ସହିତ ତା' ଆଗରେ ଭଲପାଇବାର ପ୍ରସ୍ତାବ ଉତ୍ଥାପନ କର । ମଣିଷ ସ୍ନେ ପଣିଷକୁ ଭଲପାଇବ, ଏଥିରେ ଅସୁନ୍ଦର ବା ଦୋଷର କଥା କଣ ଅଛି ? ତମେ ଡରୁଛ କାହିଁକି, ଏହାହିଁ ତ ସୁନ୍ଦର ସ୍ୱାଭାବିକ ନିୟମ । କିନ୍ତୁ ଯା ନ କରି ଏଇ ଭଣ୍ଡ ଜ୍ୟୋତିଷଟା ସହିତ ପରାମର୍ଶ କଲେ କଣ ତମର ଉଦ୍ଦେଶ୍ୟ ସିଦ୍ଧି ହେବ ? ଏଗୁଡ଼ାକ ତମର ରୁଗ୍ଣ ମାନସିକତା ଉପରେ ଏକ ପ୍ରକାର ଅତ୍ୟାଚାର ଛଡ଼ା ଆଉ କଣ ?

ଲୁସିଟି କହିଲା—ନା, ନା, ମୁଁ ଯେ ତାକୁ ଭଲପାଏ, ଏକଥା ମୁଁ ତାକୁ ଜଣାଇବାକୁ ଚାହେଁ ନାହିଁ । ତାକୁ ଜଣାଇବା ପାଇଁ ଯେ ମୋର ନୈତିକ ସାହସ ନାହିଁ, ତା ନୁହେଁ । କିନ୍ତୁ କାଳେ ସେ ମତେ ପ୍ରତ୍ୟାଖ୍ୟାନ କରିବ ଏଇ ଭୟରେ ମୁଁ ତାକୁ ମୋର ମନର କଥା ଜାଣିବାକୁ ଦେବି ନାହିଁ । ବରଂ ଏଇପରି ଅନ୍ଧ ଭାବରେ ଗୋପନରେ ଆଶା କରିବାରେ ଗୋଟାଏ ଗୌରବ ଅଛି—ଗୋଟାଏ ରକମର ପାଇବାର ନିଶ୍ଚିତ ଆନନ୍ଦ ଅଛି । ହୋଇପାରେ ତା କାଳ୍ପନିକ—କିନ୍ତୁ ବାସ୍ତବତାର ରୂଢ଼ ବ୍ୟର୍ଥତା ଅପେକ୍ଷା ତାହା ବେଶି ଆରାମଦାୟକ ସେଇଥିପାଇଁ ତ ମୁଁ ଏଭଣ୍ଡ ଜ୍ୟୋତିଷଟାକୁ ରୋଜ ପଇସା ଦେଇ ମିଛକଥା କୁହାଏ । ଯେଉଁ କ୍ଷଣିକ ଆନନ୍ଦ ପାଇଁ ମଣିଷ ମଦ ଖାଏ, ମାତାଲ ହୁଏ, ସେହି କ୍ଷଣିକ ନିରୁପାୟ ଆନନ୍ଦ ପାଇଁ ମୁଁ ଏଇ ପ୍ରତାରକଟାର ଶରଣାପନ୍ନ ହୁଏ । ସେତିକିହିଁ କେବଳ ଏଇ ମିଥ୍ୟାର ସାର୍ଥକତା । ତା ଅପେକ୍ଷା ମୁଁ ବଡ଼ କିଛି ତା ପାଖରୁ ଆଶା କରିପାରେ ନାହିଁ ।

ମୁଁ ଲୁସିଟିର କଥାଗୁଡ଼ାକ ବିସ୍ମିତ ହୋଇ ଶୁଣିଗଲି ।

ସେଇଦିନ୍ ରାସ୍ତା ପାଖରେ ସେଇ ଜ୍ୟୋତିଷଟାକୁ କାହାର ହାତ ଦେଖୁଥିବାର ଦେଖିଲେ, ମୋ ମନରେ ସେଇ ହାତ ଦେଖାଉଥିବା ଲୋକଗୁଡ଼ାକଙ୍କ ପ୍ରତି ରାଗ ହବା ବଦଳରେ ଗୋଟାଏ କେମିତି ଦରଦମିଶା ସହାନୁଭୂତିର ଉଦ୍ରେକ ହୁଏ ।

ମୋର ମନେହୁଏ ଅନ୍ଧ ଅଦୃଷ୍ଟର ସମସ୍ତ ଷଡ଼ଯନ୍ତ୍ର ଏଇ ହଜାର ହଜାର କାଳିଆ ହାତର ଅସ୍ପଷ୍ଟ ପାଣ୍ଡୁଲିପି ଭିତରେ ଯିମିତି ଲେଖା ହେଇଚି; ଆଉ ସେଥି ଶାଉସ୍ତ୍ର ଚକ୍ରାନ୍ତର ମାଟି ଗୋପନତାକୁ ଆବିଷ୍କାର କରିବାର ଆଶ୍ୱାସନା ଲାଭ କରିବା ପାଇଁ ହଜାର ହଜାର ଅସହାୟ ମଣିଷ ଯିମିତି ଏଇ ଭଣ୍ଡ ଜ୍ୟୋତିଷଟା ଭିତରେ ଜଣେ ଦୁର୍ଦ୍ଦାନ୍ତ ସନ୍ନ୍ୟାସୀର ପରିଚୟ ପାଇଚନ୍ତି ।

—*—

# ସୁଅ ମୁହଁର ପତର

ଶ୍ରୀ ପ୍ରାଣବନ୍ଧୁ କର

ଅପର୍ତ୍ତି କ୍ଷେତ୍ରରେ ହଳ କରୁଚି—ତାର ଚକିଁଣା କଳା ବଳିଷ୍ଠ ଦେହରୁ ଝାଳ ପାଣିଭଳି ବୋହିଯାଉଚି— ହଳ କରୁ କରୁ ଅପର୍ତ୍ତି କେତେ କଣ ଭାବି ଯାଉଚି—ଭାବୁ ଭାବୁ ଲଙ୍ଗଳ କଣ୍ଢି ଉପରେ ତା ହାତ କୋହଳ ହୋଇଗଲେ ବଳଦହଳଟା ଧିମେଇ ଚାଲୁଛନ୍ତି— ଅପର୍ତ୍ତି ଡାହାଣ ହାତରେ ପାଞ୍ଚଣଟାରେ ବଳଦ ହଳଟାକୁ ପିଟ୍ଟିପିଟ୍ଟି କହି ଉଠେ—'ସାନ୍ଧ୍ରର ବଇଲ—ଚଙ୍କୁ ନାହାନ୍ତି ମୋଟେ—'

ବଳଦ ହଳଟା ଟିକିଏ ଜୋରରେ ଚାଲିବାକୁ ଆରମ୍ଭ କଲେ ଅପର୍ତ୍ତି ପୁଣି ତା ଭାବନା ରାଜ୍ୟକୁ ଫେରିଯାଏ—ତାର ଭାବିବାକୁ ଆଜି ଅନେକ କଥା—ଆଠ ନ' ବର୍ଷର ଘଟଣା—ଛବି ଭଳି ସେଗୁଡ଼ା ତା ଆଖି ଆଗରେ ଭାସି ଯାଉଚି—କାଲିଭଳି ମନେ ହଉଚି ସେ ସବୁ କଥା—ଅପର୍ତ୍ତିକୁ ଆଶ୍ଚର୍ଯ୍ୟ ବି ଲାଗୁଛି—ଏଇ ଆଠ ନଅଟା ବର୍ଷ ଆଗରୁ ସବୁ ଯେମିତି ଭଲ ଥିଲା—ଲୋକେ ଦୁଃଖେ ସୁଖେଁ ଶାଗପେଜ ଖାଇ ଆରାମରେ ଚଳି ଯାଉଥିଲେ—

କୁଆଡୁ ଅସିଲା ଏ ହାକିମାନିଆ ଲଢ଼େଇ—ସବୁ ବଦଳେଇ ଦେଇଗଲା—ଇଂରାଜ ସରକାରର ସିଆଡ଼େ କୋଉ ଜରମାନି ନା କଅଣ ତା ସାଙ୍ଗରେ ଯୁଦ୍ଧ ଲାଗିଲା-- ଅମର କଅଣ ଗଲା ସେଇଠୁ ?

କହିଲେ କଣ ନା—ଜାପାନୀ ମାଡ଼ି ଆସୁଚି—ଆମ ଦେଶକୁ ନେଇଯିବ—ଲଢ଼େଇକି ବାହାରିପଡ଼—

କହେ—ଜାପାନୀ ନେଲେ କେତେ—ଇଂରେଜୀ ନେଲେ କେତେ—ଆମର କୋଉ ଦୁଃଖ ଯାଉଚି—ଯିଏ ଆମ ଉପରେ ରଜା ହେବ ସିଏ ତା ଦେଶକୁ ସବୁ ଲୁଟ୍ କରି ବୋହିବ—

ଏବେ ଯୁଦ୍ଧ ସରିଲାଣି ତିନି କି ଚାରି ବର୍ଷ ହେଲା—ଜିନିଷ-ପତ୍ରର ଦରଦାମ କମନ୍ତା କଉଣ ନା ଆହୁରି ବଢ଼ୁଚି ।

ଅପର୍ତ୍ତିକୁ ବଡ଼ ଆଶ୍ଚର୍ଯ୍ୟ ଲାଗେ—ଯୁଦ୍ଧ ହଉଚି କୋଉଠି, ଜିନିଷ ମହଙ୍ଗା ହଉଚି କୋଉଠି—

ଆଗ ଆଗ ଅପର୍ତ୍ତି ଆଉ ଅପର୍ତ୍ତି ଭଳି ଲକ୍ଷ ଲକ୍ଷ ଚାଷୀ ଇସ୍ପାର ନେଉ ପାଉନଲେ—ଲଢ଼େଇ ହବାର କେତେ ମାସ ପରେ ଯେତେବେଳେ ଉଡ଼ାଜାହାଜଗୁଡ଼ାକ ଅପର୍ତ୍ତି ହଳ କଲାବେଳେ ତା ମୁଣ୍ଡ ଉପର ଦେଇ ଉଡ଼ିଯାଆନ୍ତି ଘଁ ଘଁ କରି, ସେ ହଳ ଛାଡ଼ିଦେଇ ହାଡ଼ି ପାଖ ବୁଦାମୂଳେ ଲୁଚି ଯାଇ ଭୟାର୍ତ୍ତ ଆଖିରେ ସେଗୁଡ଼ାକ ଆଡ଼େ ଚାହିଁରହେ—ବଳଦ ଦିଟା ବି କାନ ଡେରି ଅଟକିଆ ଅମୁହାଁ ଦୌଡ଼ନ୍ତି ହଳ-ଜୁଆଳି ସାଥିରେ—

କିଛିଦିନ ପରେ ତା ଭୟ କଟିଗଲା—ଏକାସାଙ୍ଗେ ଆଠଦଶଟା ଉଡ଼ାଜାହାଜ ତା କ୍ଷେତ ଉପର ଦେଇ ଉଡ଼ିଗଲାବେଳେ ତାକୁ ଭାରି ଖୁସିଲାଗେ—ତାର ମନେ ହୁଏ ଉଡ଼ାଜାହାଜଗୁଡ଼ାକ ତାଙ୍କ ଗାଁ ଉପର ଦେଇ ଯେତେବେଳେ ଉଡ଼ି ଯାଉଛନ୍ତି, ନିଶ୍ଚୟ ଏଇ ପାଖରେ କେଉଁଠି ଯୁଦ୍ଧ ଲାଗିଚି—ଆଉ ସେ ଯୁଦ୍ଧରେ ତାଙ୍କ ଗାଁ, ସେ, ସମସ୍ତେ ଯିମିତି ଭାଗ ନେଇଛନ୍ତି ।

ଯୁଦ୍ଧର ଏଇ କାଳ୍ପନିକ ଅନୁଭୂତି ତା ମନରେ ଖୁବ୍ ଉତ୍ତେଜନା ଆଉ ଆନନ୍ଦ ଖେଳେଇ ଦେଇଚି—

କ୍ରମେ ସେ ଉତ୍ତେଜନା ତାର ସ୍ୱାଭାବିକ ଗତିରେ କମି ଆସିଚି—ଦିନେ ନୁହେଁ, ଅଧେ ନୁହେଁ, ବର୍ଷ ବର୍ଷ ଧରି ଯୁଦ୍ଧ ଲଗିଚି—କିନ୍ତୁ ଯୁଦ୍ଧର ଶବ୍ଦ ଅପର୍ତ୍ତି ଦେଖିବାକୁ ପାଉନି—କେତେ ଦିନ ବା ଆଉ ସେ ଉତ୍ତେଜନା ରହନ୍ତା !

ଲଢ଼େଇ ଯୋଉଠି ଲଗୁ—ଅପର୍ତ୍ତି ମନରେ ଆସିଚି ବିଷାଦ—ସବୁ ଜିନିଷର ଦାମ୍ ବଢ଼ିଗଲା—କିରାସିନି, ଗୁଡ଼ଲି, ଲୁଗା ତ ଆଉ ମିଳିବାକୁ ନାହିଁ—ଗୁଡ଼ଲି ଟଙ୍କାକୁ ଦି ସେର—ସେ ବି ଘୋଡ଼ାଦାନା—ସେଥିରେ ବି କଳାପୋତେଇ—ଡିବିରି ଖଣ୍ଡିକରେ ଧୂଳି ଆଙ୍ଗୁଠି ବହଳରେ ଜମିଗଲାଣି—ଟୋପେ କିରାସିନି ବି ତାକୁ ମିଳୁନି—ରାତି ଅନ୍ଧାରରେ ଯିବା ଆସିବା କରିବାକୁ ତା ନିଜର କିଛି କଷ୍ଟ ହଉନି—କିନ୍ତୁ ତା ବୁଢ଼ୀମା—ଦିନବେଳେ ବି ଆଖିକି ଭଲ ଦିଶୁନି—ସନ୍ଧ୍ୟା ହେଲାରୁ କୁଆଡ଼େ ଠିକିଏ ଗୋଡ଼ବଢ଼େଇଲେ କଚଡ଼ା ଖାଏ—ଅପର୍ତ୍ତି କେତେ ଥର ବୁଢ଼ୀମାକୁ ଉଠେଇ ଧରିଚି—ଦେହର ପୀଡ଼ା ଖାଇବାକୁ ତେଲ ମାଲିସ କରିଦେଇଚି—

ତା ବୁଢ଼ୀମାର ଏଇ ଦୁଃଖ ସେ ଆଉ ସହିପାରେ ନି—ଧନି ସାହୁ ପାଖରେ ଟୋପେ କିରାସିନି ପାଇଁ କେତେ ନେହୁରା ହୁଏ—କିନ୍ତୁ ପାଏନି—

ଦିନେ ଅନ୍ଧାରରେ ସେମିତି ଗୋଡ଼ ଖସି ତା ବୁଢ଼ୀମା ଆଖି ବୁଜିଲା—

ଅପର୍ତ୍ତିର ଶାନ୍ତ ନିରୀହ ମନ ବିଦ୍ରୋହ କରି ଉଠିଲା—ଅବାରିତ ଅଶ୍ରୁ ବର୍ଷଣ କରି ସେ ତାର ଉଦ୍‌ବେଳିତ ଚିତ୍ତକୁ ଲଘୁ କରିବାକୁ ଚେଷ୍ଟା କଲା—

ଅପର୍ତ୍ତିର ଘୋର କ୍ଷୋଭ—ସେ ଯେଉଁ ଭୂଇଁରେ ଫି ବର୍ଷ ସୁନା ଫଳାଏ ସେ ଭୂଇଁର ଫସଲ ଖାଏ ତା ସାହୁକାର—ତା ଉପାସିଆ ପେଟକୁ କିଛି ଯୋଗାଏନି ଏଇ ଭୂଇଁ—

ସମସ୍ତେ କହିଲେ ଅପର୍ତ୍ତିକୁ 'ବାହା ହ'—

ଅପର୍ତ୍ତି ବି ଭାବୁଥିଲା ସେୟା—ବୁଢ଼ୀ ମା ଆଖିବୁଜିଲା ଦିନୁ ଗତେଣ୍ଡେ ଧୂଳେଇ ଦବାକୁ କେହି ନାହାନ୍ତି—

କିନ୍ତୁ ଯୁଦ୍ଧିବେଳେ ଚଳପାତ ମହଙ୍ଗାରେ ତାର ସାହସ ହେଲାନି—କେହି କହିଲେ ଉତ୍ତର ଦିଏ—ଲଡ଼େଇଟା ସରିଯାଉ—ନିଜେ ଖାଇବାକୁ ପାଉନି—ଘରେ ଆଣି ହାଣ୍ଡି ବାନ୍ଧିବ ?

ମୁହଁ ଜୋରରେ କହୁଦିନ ଏମିତ ମାରିନେଲା ସିନା—କିନ୍ତୁ ମନର ଗୋଟିଏ ନିଭୃତ କୋଣରେ ଗୁରେଇର ଛବି ମଝିରେ ମଝିରେ ଝଲସି ଉଠି ତାକୁ ଅସ୍ଥିର କରିପକାଏ ।

ସବୁଦିନେ ବଡ଼ ଭୋରରୁ ହଳବଳଦ ଧରି ଅପର୍ତ୍ତି ବିଲକୁ ଗଲାବେଳେ ଗୁରେଇ "ସାନ ସାଆନ୍ତ"ଙ୍କ ପୋଖରୀରୁ ଗାଧୋଇ ଫେରୁଥାଏ—ମୁଣ୍ଡରେ ଗୋଟେ ପାଣିଭର୍ତ୍ତି ଗରା—କ୍ଷୀଣ କଟି ଓ ବାଁ ହାତର ବେଷ୍ଟନୀ ଭିତରେ ଆଉ ଗୋଟିଏ ଗରା ଧରି ଗୁରେଇ ତା ପାଖ ଦେଇ ଚାଲିଯାଏ—ଅପର୍ତ୍ତିର ଅବାଧ ଆଖି ଗୁରେଇର ସିକ୍ତ ବସନ ଭେଦ କରିଯାଏ—ଅଣ୍ଟା ପାଖ ଗରାରୁ ପାଣି ଚହଲି ଗୁରେଇର ଲୁଗା ଦେହରେ ଜଡ଼ ଯାଇଥାଏ—ଅପର୍ତ୍ତି ମୁହଁ ଫେରେଇ ଚାହେଁ—

କେତେ ଥର ସେ ଗୁରେଇ ପାଖରେ ଧରା ପଡ଼ିଯାଇଛି—କିନ୍ତୁ ଗୁରେଇ ଭର୍ତ୍ସନା କରିବା ବଦଳରେ ତାର ସ୍ମିତ ହସ ଦ୍ୱାରା ତାକୁ ବରଂ ଉତ୍ସାହିତ କରିଛି ।

ଅପର୍ତ୍ତି ଆଉ ବେଶୀଦିନ ଏକା ଏକା ଚଳିପାରିଲା ନାହିଁ—ଦିନେ ଗୁରେଇ ଗାଧୋଇ ଫେରିଲାବେଳେ ସେ ତାକୁ ଅଟକେଇ ପଚାରିଲା—

ଗୁରେଇ କୌଣସି ଆପତ୍ତି ନ କରି ହଁ ଭରିଲା—ଧମାଘୋଟ ଯୁଦ୍ଧବେଳେ ଅପର୍ତ୍ତି ବାହାରିଗଲା—ଯେତେବେଳେ ପେଟକୁ ଦାନା ପିଠିକୁ କନା ମିଳୁନ—ଜାପାନ୍ନ ମାଡ଼ ଆସୁଚି ପିଆଡ଼ୁ—

ବାହାଘରର ପ୍ରଥମ ନିଶା କଟିଯାଏ—ତାଙ୍କରି ଦରିଦ୍ର ସଂସାରର ଅଭାବଗୁଡ଼ିକ କ୍ରମେ ସ୍ପଷ୍ଟତର ହୋଇଉଠେ—କେତେଦିନ ପରେ ଅପର୍ତ୍ତି ଦେଖିଲା—ଗୁରେଇର ଖଦି ଦଶଣ୍ଡ କେତେଠେଇଁ ଚିରି ଚିରି ଗଲାଣି—କେତେ ଚେଷ୍ଟା କରି ମଧ୍ୟ ଅପର୍ତ୍ତି ଗୁରେଇ ପେଇଁ ଖଣ୍ଡେ ଖଦି କଣିପାରେ ନି—

ଯୁଦ୍ଧ ବଜାରରେ କଳାପୋତେଇ କରି ଧନିସାହୁ କୋଠା ବାନ୍ଧେଇବାକୁ ବସିଲାଣି—ପଇସା ଯାଚି ମଧ୍ୟ ଧନିସାହୁଠୁ ସେ ଖଦି ଖଣ୍ଡେ ପାଇପାରିଲା ନାହିଁ କେଉଁଠେ ନେଇବୁ ହେଲେ ବି— କଳାପୋତେଇ ଦବାକୁ ତାର ବା ପଇସା କାହିଁ ?

ଗୁରେଇ ଚିରା ଶାଢ଼ୀରେ ତାର ପୂର୍ଣ୍ଣ ଅବୟବର ଲଜ୍ଜା ଆଉ ଢାଙ୍କି ପାରୁନି—ନିଜେ ଅପର୍ତ୍ତି ବି ଗୃହିଁ ପାରୁନି ଗୁରେଇ ଆଡ଼େ—

ବେଳେ ବେଳେ ଅପର୍ତ୍ତି ମନରେ ଭାରି ରାଗ ହୁଏ । ଭାବେ—ଧନିସାହୁ ଦୋକାନରେ ନିଆଁ ଲଗେଇଦବ—କିନ୍ତୁ କଅଣ ଭାବ ପୁଣି ଦବିଯାଏ—

ହଠାତ୍ ଗାଁର ସମସ୍ତେ ଖବର ପାଇଲେ ସରକାର କିଣୁଛନ୍ତି— ସରକାରୀ କର୍ମଚାରୀମାନେ ଗାଁ ଗାଁ ବୁଲି ଖବରଟା ଶୁଣେଇ ଦେଇଗଲେ—

ପ୍ରତ୍ୟେକ ବିଭାଗରେ ଲଉଡ଼ ସିକାର୍ ଗାଁ ଗଣ୍ଡା ଫଟେଇ ପକେଇଲେ—

ସମସ୍ତେ ଶୁଣି ଖୁସି ହେଲେ—ଅପର୍ତ୍ତି ଖୁସି ହୋଇ ଭାବିଲା ଏଥର ନିଶ୍ଚେ ତା ଦୁଃଖ ଯିବ—ଲୁଗାପଟା ଶସ୍ତା ହବ—ତା

ଗୁଟେରଇ ଆଉ ହଟର ଟେଙ୍ଗୋ ଖଣ୍ଡ ଚିନ୍ହିବନି—ଗୁଟେରଇ ଖାଦ୍ୟରେ ନଖ ବଢ଼ାଇବରେ ମଇଳା ଜମିଲାଣି—କିନ୍ତୁ କଅଣ କରାଯିବ— କାଟିବାକୁ ବସିଲେ ତ ଖଣ୍ଡିଟି ସୁର୍ ସୁର୍ ହୋଇ ଚିରିଯିବ—

ସରକାର ଜଣିନ୍ଥନ୍ତି ବୋଲି ଗାଁରେ ଗାଉବ ଗୁରୁବାଙ୍କୁ ଲୁଗା ବଣ୍ଟା ହେବାପାଇଁ ଡେଙ୍ଗୁରା ଦିଆହେଲା—ଅପର୍ତ୍ତି ପଚାରିଲା ଗୁଟେରଇକି—

"ଗୁଟେରଇ ନେ ଯିବୁ ?"—ଲୁଗା ବଣ୍ଟା ହଉଛି—ଏତେ ଦୁଃଖରେ ବି ଅପର୍ତ୍ତି ଉପରେ ଟିକିଏ ହେଲେ ବିରକ୍ତ ନ ହୋଇ ଗୁଟେରଇ କହିଲା—ମୁଁ କମିତି ଯିବି ମ ଏଇ ଚିରିଣ୍ଡା ଲୁଗା ପିନ୍ଧି ? ମୁଣ୍ଡ ଛିଡ଼ିପଡ଼ିବ ଏତେ ଲୋକଙ୍କ ଭିତରେ—

ଅପର୍ତ୍ତି ବୁଝିଲା—ତେଣୁ ସେ ଏକା ଗଲା—ଖଣ୍ଡିଏ ଷ୍ଟାଣ୍ଡାର୍ଡ଼ ଧୋତି ମିଳିଲା ତାକୁ—

ଫେରିଆସି ଗୁଟେରଇକି ଧୋତିଟି ଦେଇ କହିଲା—ଯାଇଥିଲେ ଖଣ୍ଡେ ଲୁଗା ପାଇଥାନ୍ତୁ—ନେ, ପିନ୍ଧ ଏଇଟାକୁ—ମୋର ଚଳିଯିବ ।

ଯୁଦ୍ଧ ସରିଗଲା—ସାଉକାର କ୍ଷେତରେ ହଳ କଲାବେଳେ ଅପର୍ତ୍ତି ଆଉ ଉଡ଼ାଜାହାଜର ଘଁ ଘଁ ଶବ୍ଦ ଶୁଣିବାକୁ ପାଇଲା ନାହିଁ—

ଦିନ ଗଡ଼ି ଚାଲିଲା—କିନ୍ତୁ ଚାଉଳ, ଲୁଗା, କିରାସିନ ଦର ଆଉ କମିଲା ନାହିଁ ।

ଅନାହାର, ଅର୍ଦ୍ଧାହାର ଓ ଅଯତ୍ନରେ ଗୁଟେରଇର ସୁନ୍ଦର-ପଣିଆ କମି ଆସିଲାଣି ।

ଦେଢ଼ ବର୍ଷ ଆଗରୁ ଯେଉଁ ମିଣିପି ପିନ୍ଧା ଖାଦ ଖଣ୍ଡିକ ଅପର୍ତ୍ତି ଦେଇଥିଲା ଗୁଟେରଇକି, ସେ ଖଣ୍ଡ ବି ଚିରି ଆସିଲାଣି ।

କେତେଦିନେ ଫେର ସିଏ ପଇସା ଧରି ଯାଇଁ ଧନ ସାହୁ ଦୋକାନ ମୁହଁରେ ଠିଆ ହେଲା—

ଧନ ସାହୁ କହିଲା—ଯା, ଯା—ଲୁଗା ନାହିଁ । ତିନିଟା ଟଙ୍କାରେ ଶାଢ଼ୀ କିଣିବ ।

ଅପର୍ତ୍ତି ନମ୍ର ସ୍ୱରରେ କହିଲା—ସାହିଏ, କେତେ ଥର ଫେରେଇ ଦେଲଣି—ଘରେ ସିଆଡ଼େ ଉଧୂ ଲଙ୍ଗଳା—ପାଣି ମାଠିଏ ଆଣିବାକୁ ପଦାକୁ ବାହାରିପାରୁ ନାହାନ୍ତି ।

ଧନ ସାହୁ ଓଲଟି ଥଟ୍ଟା କରି କହିଲା—ଏଠେଇ ଦଉନୁ କାହା ପାଖକୁ—ସିଏ ଲୁଗା ପିନ୍ଧେଇ ଗୁଡ଼ିଦେବ—

ଅପର୍ତ୍ତିର ଶିର ପ୍ରଶିରଗୁଡ଼ାକ ରାଗରେ ଫୁଲିଉଠିଲା—ଆଖିଗୁଡ଼ାକ ଜଳି ଉଠିଲା—

ଏଇ ଧନ ସାହୁ—ଯୁଦ୍ଧ ଆଗରୁ ବାହ୍ମଣ ସାଇ, କେଉଟ ସାଇ, ପାଇକ ସାଇ ଘର ଘର ବୁଲି ପାଟଫୁଲି, କୁଞ୍ଚ, ସୂତା, ଗନ୍ଧକପୂର ବିକୁଥିଲା । ତାର ଫେର ମୁହଁ ଉପରକୁ ହେଲାଣି ।

ଦାନ୍ତ ଚିପି ରାଗ ବନ୍ଦ କରି ଫେରି ଆସିଲା ଅପର୍ତ୍ତି—

ଗାଁ ଗାଁ ବୁଲି ଦେଶ-ସେବକମାନେ ପ୍ରଚାର କଲେ—ସୂତା କାଟି ଲୁଗା ଅଭାବ ଦୂର କର—ନିଜ ଗୋଡ଼ରେ ନିଜେ ଠିଆ ହୁଅ—ତା ନ ହେଲେ ଦାସତ୍ୱର ବେଡ଼ିରୁ ମୁକ୍ତି ଲାଭ କରିପାରିବ ନାହିଁ—

କେଉଁଠି କେଉଁଠି କୃଷୀ ମୂଲିଆ ସଭା ହେଲା । କିଏ କହିଲା—'ଜମିଦାରକୁ କର ଦିଅନି'—କିଏ କହିଲା 'ଧର୍ମଘଟ କର ।'

ଅପର୍ତ୍ତି ସବୁ ଶୁଣେ—କିନ୍ତୁ କେହି ତାର ଖାଦ୍ୟ ପୋଷାକର କାର୍ଯ୍ୟକାରୀ ସମାଧାନର ପନ୍ଥା ଦେଖାନ୍ତି ନାହିଁ । ବିଭିନ୍ନ ରାଜନୈତିକ

ଦଳର ବିଭିନ୍ନ ମତବାଦ ତୁସୃଷ୍ଟ ହୁଏ—ଅଟାଟୁଆ ଅଳ୍ପ ଜ୍ଞାନୀ ଅପର୍ଣ୍ଣି ମୁଣ୍ଡରେ ସେ ସବୁ ଢୁକେନି ।

ଗୁରେଇର କ୍ଳିଷ୍ଟ ଉଲଗ୍ନ ଦେହ ତାକୁ ଅହରହ ପୀଡ଼ାଦିଏ—ଦିନବେଳେ ଗୁରେଇ ତାର ନଗ୍ନପ୍ରାୟ ଦେହକୁ କୁଡ଼ିଆ ଭିତରେ ଲୁଚେଇ ରଖେ—ସନ୍ଧ୍ୟା ହେଲେ ସେ ଯାଏ ପଡ଼ିଆକୁ କମ୍ପା କୂଅରୁ ପାଣି ଆଣିବାକୁ ଅତି ସନ୍ତର୍ପଣରେ—

ଅପର୍ଣ୍ଣି କଳ ଭଳି ତା ସାଉକାର ପେଲଁ ହଳ କରେ ପରସ୍ପରରେ ଅପର୍ଣ୍ଣି ଶୁଣିପାରେ ତା ଦେଶ ସ୍ୱାଧୀନ ହେବ—କିଛି ବୁଝି ପାରେନି—

ସ୍ବାକୁ ତାକୁ ପଚରିବ କେବଳ ଏତିକି ବୁଝେ—ଆଉ କେଇଟା ଦିନ ଗଲେ ଗୋରା ଲୋକେ ଆମ ଦେଶରେ ଆଉ ରହିବେନି । ଆମର ଦେଶ ଲୋକେ ଆମ ରାଇଜ ଚଳେଇବେ—କଳାପୋଚେଇ, ଗୋରାବଜାର ବନ୍ଦ ହୋଇଯିବ—ଲୁଟା, କଗିରୀ, ଗୁଣ୍ଡଳ ଶସ୍ତା ହବ—ଲାଞ୍ଚ ମିଛ ଆଉ ଦେଶରେ ରହିବନି—

ଅପର୍ଣ୍ଣି ଭାରି ଖୁସି ହୋଇଯାଏ ।

ଆନନ୍ଦରେ ଗୁରେଇକି ଯାଇଁ କହେ—"ଗୁରେଇ ଲୋ, ଆମ ଦୁଃଖ ଏଇଥର ଯିବ—ଆମ ଲୋକମାନେ ଆମକୁ ଚଳେଇବେ ଏଥର—ଗୋରା ଲୋକମାନେ କୁଆଡ଼େ ତାଙ୍କ ନିଜ ଦେଶକୁ ଟଣ୍ଡିଲି ବୁଜୁଲା ବାନ୍ଧି ପଳେଇବେ—"

ଅପର୍ଣ୍ଣି ଉତ୍ସୁକ ହୋଇ ଗୁହିଁ ରହେ ସେଇ ଦିନକୁ—

ଉଣେଇଶ ଶହ ସତଚାଳିଶ ସାଲ ଅଗଷ୍ଟ ପନ୍ଦର—ଉତ୍ସବ ହୁଏ—ଘରେ ଘରେ ତ୍ରିରଙ୍ଗୀ ଚକ୍ର ଚିହ୍ନିତ ପତାକା ଉଡ଼େ, ସ୍ୱାଧୀନ ଜୀବନର ଉଦ୍ଦାମ ପ୍ରବାହର ସଙ୍କେତ ଦେଇ—ସାମ୍ୟ ମୈତ୍ରୀର ସଙ୍କେତ ଦେଇ—

ଅପର୍ତ୍ତି ଗୃଳରେ ବ ଖଣ୍ଡିଏ ନି ରଙ୍ଗୀ ପତାକା ଉଡ଼େ—ଅପର୍ତ୍ତି ହସି ହସି ସେଇ ପତାକା ଆଡ଼େ ଗୃହିଁ ରହେ ଅପଲକ ଆଖିରେ—

ସେ ଯେପରି ଦେଖିପାରେ—ସେଇ ପତାକା ଭିତରେ ତା ଗ୍ରେଇ ହଲ ଭଲ ଖଦମାନ ପିନ୍ଧି ହସି ହସି ତା ଆଡ଼େ ଗୃହିଁଚ—ଧୁଞ୍ଜିଦେଓ ଧନ ସାହୁ ହାତରେ ବେଡ଼ି କଳାପୋତେଇ କରି ଧରା ପଡ଼ିବାରୁ—

ଦିନ ଗଡ଼ ଗୃଲେ—ଗାନ୍ଧି ବୁଡ଼ାଙ୍କୁ ଦେଶ ଭୁଲିଯାଏ—ତାର ମହତ୍ ଆଦର୍ଶକୁ ବ ଭୁଲିଯାଏ । ନି ରଙ୍ଗୀ ପତାକାଟିର କଞ୍ଚା ରଙ୍ଗ ବାୟୁ ସଙ୍ଘାତରେ ଫିକା ପଡ଼ିଆସେ—

ଅପର୍ତ୍ତି ସ୍ପଷ୍ଟ ଭାବରେ ବୁଝିପାରେନ ଦେଶର କ ପରିବର୍ତ୍ତନ ହେଲା—ଗାଁଟା ତ ଠିକ୍ ଯେପିତ୍ତି ଥିଲା ସେମିତ୍ତି ଅଛି—

ତା ଗୃରେଇ ତ ସେମିତ୍ତି ଚିଣ୍ଡା କନା ପିନ୍ଧିଚ—କାନସିର, କଇଁଚେକଣ୍ଢ ସିଝା ଖାଉଚ—ପରିବର୍ତ୍ତନ ତେବେ ହେଲା କେଉଁଠି ?

ହଳ ଛୁଡ଼ିଦେଇ ଅପର୍ତ୍ତି ଆଣ୍ଠୁ ଉପରେ କହୁଣୀ ରଖି ହାତ୍ତ ଉପରେ ବସି ଭାବେ—କିନ୍ତୁ କାହିଁ ? ପରିବର୍ତ୍ତନ ତ କେଉଁଠି ଦେଖେନି ? ଧନ ସାହୁର କଳାବଜାର ତ ଠିକ୍ ସେମିତ୍ତି ଗୃଲିଚ—ତାଙ୍କ ଗାଁ ପୋଖରୀ ଗୁଡ଼ାକରେ ତ ଦଳ ସେମିତ୍ତି ଭର୍ତ୍ତି ହେଇଚ—ମେଲେରିଆ, ହଇଜାରେ ଲୋକ ସେମିତ୍ତି ତ ମରୁଛନ୍ତି—ଗୃରେଇର ଚିଣ୍ଡା କବଟା ତ ସେମିତ୍ତି ଦେଖା ଯାଉଚ !

କେବଳ ଗୋଟିଏ ବିଷୟରେ ଅପର୍ତ୍ତି ପରିବର୍ତ୍ତନ ଲକ୍ଷ୍ୟ କରେ—ଦେଶ ସ୍ୱାଧୀନ ହେବା ଆଗରୁ ଯେଉଁ ଲୋକମାନେ ଏଇ ଗାଁକୁ ମାସ ଭିତରେ ଅନ୍ତତଃ ଦି ଥର ଆସି ସଭା ସମିତ୍ତି କରି ସେମାନଙ୍କୁ ରାମ ରାଜ୍ୟର କଳ୍ପନାପୁରୀକୁ ନେଇ ଯାଉଥିଲେ,

ସ୍ୱାଧୀନତା ପରେ ଆଉ ସେମାନେ ଦେଖା ନାହାନ୍ତି—ଯେଉଁ କର୍ମୀ ଜଣକ ଖାଲି ପାଦରେ ଆଣ୍ଠୁ ଉପରକୁ ମୋଟା ଖଦି ଖଣ୍ଡିଏ ପିନ୍ଧି, କାନ୍ଧରେ ଝୁଲିମୁଣି ଝୁଲେଇ ଏ ଗାଁରେ କେତେ ଥର ସଭା ସମିତି କରି ଗାନ୍ଧିଙ୍କର ଅହିଂସା ନୀତି, ସରଳ ଜୀବନ-ଯାପନର ଆଦର୍ଶ ପ୍ରଚାର କରି ଯାଇଛନ୍ତି, ସିଏ କେବଳ ଥରେ ଏଇ ବାଟ ଦେଇ ଗୋଟିଏ ବଡ଼ମଟର ଭିତରେ ବସି ଯାଉଥିବାର ଅପର୍ଣ୍ଣି ଦେଖିଛି—

ବେଦନା ଓ ନୈରାଶ୍ୟରେ ଅପର୍ଣ୍ଣିର ହୃଦୟତନ୍ତ୍ରୀ ଗୁଡ଼ିକ ଛିଡ଼ିଯିବାର ଉପକ୍ରମ କରନ୍ତି—

ଗୁରେଇର ଅନାହାରକ୍ଲିଷ୍ଟ, ଉଲଗ୍ନ, ଝାଉଁଳା ତନୁଲତାଟି ଆଡ଼େ ଚାହିଁ ତା ଆଖି ଜକେଇ ଆସେ—

ଆଦରରେ ଗୁରେଇକି କୋଳ ଭିତରକୁ ଟାଣି ଅଣି ଦବେଇ ଦବେଇ ଅପର୍ଣ୍ଣି କହେ—ମତେ ବାହା ହୋଇ କେତେ ଦୁଃଖ ପାଇଲୁ ଗୁରେଇ—ଉଧି ଲଙ୍ଗଳା ହୋଇ ଦିନ ବିତେଇଲୁ—

ଅନ୍ୟ ଆଡ଼େ ମୁହଁ ଫେରେଇ କହେ—ତୁ ଯଦି କାହାକୁ ଦୁଃଖୀ ହବାକୁ ଚାହୁଁ ମୋର କିଛି ଆପତ୍ତି ନାହିଁ—

ଅଭିମାନ ଓ ରାଗରେ ଗୁରେଇର ଆଖି ଦୁଇଟା ଦପ୍ କରି ଜଳିଉଠେ—ଅପର୍ଣ୍ଣି ମୁହଁକୁ ଚାହିଁ ରୁକ୍ଷ ଗଳାରେ କହେ—ମତେ ଛାଡ଼ିପକ ଦବାକୁ ଯଦି ତମର ଇଚ୍ଛା ହଉଛି ଦଉନ ? ମୋର କଅଣ ହେଉଚି ଯେ ମୁଁ ଦୁଃଖୀ ହେବି—ମୁଁ ଲଙ୍ଗଳା ହେଇଚି ତମେ କୋଉଠା ହେଇଚ ?

ଗୁରେଇ ଅପର୍ଣ୍ଣିର ଦୁଇ ବଳିଷ୍ଠ ଜଙ୍ଘ ଭିତରେ ନିଜର ମୁହଁକୁ ମାଡ଼ି ରଖି କଇଁ କଇଁ ହୋଇ କାନ୍ଦିଉଠେ—ଅପର୍ଣ୍ଣି ଏଇ ବିରାଟ ନଗ୍ନ ଦାରିଦ୍ର୍ୟ ଭିତରେ ବି ଏଇ ଯେଉଁ ଗୌରବଟିକି ଲାଭ କରେ ସେଥିରେ ତାର ମୁଖରେ ଫୁଟେ ଫୁଲକର ହସ—

ଗୁରେଇର ନୁଖୁରା ଢଞ୍ଜ କେଶଗୁଚ୍ଛକୁ ଧରି ସେ ଆଦରରେ ଝାଁକ ଦେଇ କହେ— ଗୁରେଇ ତୁ କଅଣ ମୋ କଥା ସତ ଗଲୁ ?— ଗୁରେଇ କିଛି ଉତ୍ତର ନ ଦେଇ ମୁହଁ ଲୁଚେଇ ବସି ରହେ—

ଅପର୍ତ୍ତି ଭାବି ବସେ—ଏଇ କେତେ ବର୍ଷ ଧରି ସେ· ଗୁରେଇକୁ କେତେ ଆଶା ଆଶ୍ୱାସନା ନ ଦେଇଚି ? ଉଜ୍ଜ୍ୱଳ ଭବିଷ୍ୟତର କେତେ ଛବି ତା ଆଖି ଆଗରେ ନ ଦେଖେଇଚି— ସରଳ ମନରେ ଗୁରେଇ ସେ ସବୁକୁ ବିଶ୍ୱାସ କରିଚି-–

ଅପର୍ତ୍ତି ଭାବେ ତାର ଏ ଦୈନ୍ୟପାଇଁ ସେ ପ୍ରତିଶୋଧ ନେବ କାହା ଉପରେ ?

ଅପର୍ତ୍ତି ଠିକ୍ କଲା ନିଜ ଦୁଃଖ ତାକୁ ନିଜେ ଘୁଚେଇବାକୁ ହେବ—

ନୈଶ ଅନ୍ଧକାର ଭିତରେ ସେ ଦିନେ ପଶିଲା ଧନ ସାହୁ ଦୋକାନ ଆଡ଼େ—

ନିଦ ମଳ ମଳ ଆଖିରେ ଗୁରେଇ ଉଠି ବସି ଦେଖିଲା ଅପର୍ତ୍ତି ବିଖଣ୍ଡି ମାଇପି ପିନ୍ଧା ଖଦି ଧରି ତା ପାଖରେ ବସିଚି—କିଛି ବୁଝି ନ ପାରି ପଚାରିଲା—ଖଦି କୋଉଠୁ ଆଣିଲ ?

ଅପର୍ତ୍ତି ହସି ହସି କହିଲା—ଯୋଉଠୁ ଆଣିଲେ— ତୁ ଗାଧୋଇ ପାଧୋଇ ପିନ୍ଧିବୁଟି ଆଗ ଖଣ୍ଡେ ଦେଇଗି—ମୁଁ ଆଉ ତୋ ଆଡ଼େ ଅନେଇ ପାରୁନି—

ସନ୍ଦିଗ୍ଧ ଦୃଷ୍ଟିରେ ଗୁରେଇ ତା ଆଡ଼େ ଚାହିଁ କହିଲା— ଯୋଉଠୁ ଆଣିଲ କଣ ମ ? ରାତି ରାତିରାତି ଚାଲି ବାଟ ଦେଇ ଅଇଲ—?

ଅପର୍ତ୍ତି ଇତସ୍ତତଃ କରି ଶେଷକୁ କହିଲା—ଧନ ସାହୁ ଦୋକାନରୁ ଚୋରି କରିଚି—

ଚମକାପଡ଼ି ଗୁରେଇ କହିଲା—ଚୋର ?

ହଁ, ଚୋର—କଅଣ ହୋଇଗଲା ସେଇଠୁଁ ? କିଏ ନ କରୁଚି ଚୋରି ? ଧନ ସାହୁ କଳାପୋଟେଇ କରି ଠଙ୍କାକ ଯାଗାରେ •ପାଞ୍ଚଠଙ୍କା ନଉଚି—ସେଇଟା କଅଣ ଚୋରି ନୁହେଁ ? ଯୋଉ ବାବୁମାନେ ଜାଣିଶୁଣି ତାକୁ ଛାଡ଼ି ଦଉଛନ୍ତି ସେମାନେ ସବୁ କଅଣ ? ଭଲ ଲୋକ ?

ଯୋଉ ସାହୁକାର ଆମକୁ ଠକେଇ ଆମ ଚଣ୍ଡି ଚିପି ଖଜଣା ଅସୁଲ କରୁଚି ସିଏ କଅଣ ? ଚୋର ନୁହଁ ? ଆଉ ମୁଁ ଖାଇବାକୁ ପାଉନି, ପିନ୍ଧିବାକୁ ପାଉନି—ଚୋରି କଲି ତ କଅଣ ହେଲା ?

ଗୁରେଇ ଭୟାତଙ୍କ ଗଳାରେ କହିଲା—ଯଦି ଧରା ପଡ଼େ ?

ଅପର୍ତ୍ତି ନିର୍ଭୀକ ଭାବରେ ଉତ୍ତର ଦେଲା—ଧରା ପଡ଼ିଲେ ପଡ଼ିବ—ତା ଆଗରୁ ତୁ ଖଣ୍ଡେ ଲୁଗା ହେଲେ ପିନ୍ଧି ପକେଇଥା—ଛିଣ୍ଡା ଲୁଗାଗୁଡ଼ିକ ଏଇ ଅଗଣାରେ ପକେଇ ଦେ—ଆଉ ଏଇ ଶାଢ଼ୀ ଖଣ୍ଡେ ପାଉଁଶ ଗଦା ଭିତରେ ଲୁଚେଇ ଦେଇ ଆ—ଯା—ବେଇଗି ସବୁ କରିପକା—

ଗୁରେଇ ଅପର୍ତ୍ତି କହିଲା ପ୍ରକାରେ ସବୁ କରିଗଲା ଶଙ୍କିତ ଚିତ୍ତରେ—

ବାରଟା ବେଳକୁ ପୁଲିସ ଆସି ଅପର୍ତ୍ତି ଘର ଖାନତଲାସ କଲା—

ଗୁରେଇ ନୂଆ ଶାଢ଼ୀଟା ପିନ୍ଧି ଲଜ୍ଜାବନତ ମୁଖରେ ଠିଆ ହେଲା ପୁଲିସ ସାମନାରେ—

ଗୁରେଇ ପିନ୍ଧା ଶାଢ଼ୀକୁ ଦେଖାଇ ପୁଲିସ ପଚାରିଲା ଅପର୍ତ୍ତିକୁ ଏ ଶାଢ଼ୀ କୋଉଠୁ ପାଇଲୁ ?

ଟିକିଏ ବି ଶଙ୍କି ନ ଯାଇ ଅପର୍ତ୍ତି ଉତ୍ତର ଦେଲା—କିଣିଛୁ—

ପୁଲିସ ପଚାରିଲା—କୋଉଠୁ କିଣିଲୁ ?

ହେଇ ଯିଏ ଆପଣଙ୍କ ସାଥିରେ ଆଇଚ—ଧନ ସାହୁ—କିଣିଚି ଏଇ ରବିବାର ଦିନ—

ଧନ ସାହୁ ଆଡ଼େ ଚାହିଁ ପୁଲିସ ପଚାରିଲା—"କଉ ଦିନ ବିକିଚ ?"

ଆଖି ଦି'ଟା ବଡ଼ବଡ଼ କରି ହାତଯୋଡ଼ି ଧନ ସାହୁ କହିଲା—ନାଇଁ ଆଜ୍ଞା ! ଖାତା ଦେଖନ୍ତୁ ତା ଦସ୍ତଖତ ତ ଥିବ—

ଅପତ୍ତି ହେଲେ ମିଶା ଟୋକାରେ କହିଲା—ଦସ୍ତଖତ ଆସିବ କୋଉଠୁ ସାହୁଏ ? ରାତି ବାରଟା ବେଳେ ଚୋରଙ୍କ ଭଳି ବାଡ଼ପଟେ ତ ନୂଆ ବିକିବ କଳାପୋତେଇରେ—ଅଟେଇଲ ଟଙ୍କାର ଖଦି ଖଣ୍ଡିଏ ତ ମୋଠୁ ପାଞ୍ଚ ଟଙ୍କା ଲୁଚାଏ ନେଲ—ଅଭଡ଼ିଆ ବେଉସା—ଅଭିକା ମତେ ଚୋର କରିବାକୁ ବସିଚ କଅଣ କିଏ ସାହୁ ?

ପୁଲିସ ଆଡ଼େ ଚାହିଁ ପଚାରିଲା—ଆଜ୍ଞା, ମୁଁ ଚୋର କି ନୁହେଁ ପଚାରନ୍ତୁ ସବୁ ଗାଁ ବାଲାଙ୍କୁ—ଆଉ ସେଇମାନଙ୍କୁ ପଚାରନ୍ତୁ ଧନ ସାହୁ କଳାପୋତେଇରେ ନୂଆ ବିକେ କି ନାହିଁ—ତାଙ୍କର ଭିତରୁ ବି କେତେ କିଣିଥିବେ ।

ପୁଲିସ ଚାହିଁଲା ଗାଁ ଲୋକଙ୍କ ଆଡ଼େ—ସମସ୍ତେ ନୀରବ ରହିଲେ—ପୁଲିସ ଧନ ସାହୁକୁ ପଚାରିଲା—ତମର କେତେ ଯୋଡ଼ା ଲୁଗା ଚୋରି ଯାଇଚି ?

ଧନସାହୁ ଥଙ୍ଗେଇ ଥଙ୍ଗେଇ ମନେ ପକେଇବା ଭଳି ଆଖି ଉପରକୁ କରି କହିଲା—ଆଜ୍ଞା ଦଶ କି ପନ୍ଦର ଯୋଡ଼ା ।

ଧମକ ଦେଇ ସବ୍ଇନ୍ସପେକ୍ଟର କହିଲେ—ଠିକ୍ କେଇଟା ଜାଣିନ ? କଣ୍ଟ୍ରୋଲ ଦୋକାନ ତମର—ଲୁଗା ହିସାବ ଠିକ୍ ରଖିନ ?

ଧନ ସାହୁ ଟାଟି ଫାଙ୍କୁ ଫାଙ୍କୁ କଲା—ପୁଲିସ ଅଫିସର ଘରବାଡ଼ି, ସବୁ ଠିକଣାଙ୍କ କରି ଖୋଜି କେଉଁଠି କିଛି ନ ପାଇ ଧନ ସାହୁଙ୍କୁ ପଚାରିଲେ କହିଲେ—ଏପ୍ରାଡ଼େ ଚୋର ମିବା ବାହାନା ଦେଖାଇ ମିଆନ୍ତି କଳାଟୋପାଡେଇ ଚାଲିବା ନାହିଁ—ଆସ—ତମ ଦୋକାନ ଖାନ୍‌ତଲାସି କରିବା—ତମେ ବଡ଼ ସୁବିଧା ଲୋକ ନୁହଁ ତ ?

ପୁଲିସ ଆଗେଇ ଚାଲିଲା—ପଛେ ପଛେ ଧନ ସାହୁ ଚୋରଙ୍କ ଭଳି ଥରି ଥରି ହାତ ଯୋଡ଼ି ଚାଲିଲା—

ଅଫିସ୍ ଚାହିଁଲା ପୁରେଇ ଆଡ଼େ ହସି ହସି—

ପୁରେଇ ପଚାରିଲା ଆଶ୍ଚର୍ଯ୍ୟ ହୋଇ—ତମେ ଏତେ ଗୁରାଏ ମିଛ କହିଲେ ପୁଲିସ ଆଗରେ ? ମୋ ଗୁଡ଼ ଥରୁଥିଲା ଖାଲି ?

ଅଫିସ୍ କହିଲା—ନେଇ ଆଣି ଥୋଇ ଜାଣିଲେ ଚୋର ବିଦ୍ୟା ଭଳି—

ପୁରେଇ ବ୍ୟସ୍ତ ହୋଇ କହି ଉଠିଲା—ନାହିଁ—ନାହିଁ—ଆମେ ଶୁଖି ଶୁଖି ନଙ୍ଗଳା ହୋଇ ମରିବା ପଛେ—ତମେ ଏମିତି କୋଉଠୁ ଚୋରି କରନା—ମୋ ଗୁଡ଼ ଧଡ଼ ଧଡ଼ ହଉଚି—

ଅଫିସ୍ କିଛି ସମୟ ଚୁପ୍ ହୋଇ ବସି ରହିଲା—ତା ପରେ ଆଖି ଛଳ ଛଳ କରି ବ୍ୟଥାତୁର କଣ୍ଠରେ କହିଲା—ପୁରେଇ—ଚୋର କଅଣ ମୁଁ ସଉକରେ କଲି ? ବଡ଼ଲୋକମାନେ ସଉକରେ ହଜାର ହଜାର ଚୋରି କରୁଛନ୍ତି—ଆମେ ନଙ୍ଗଳା ହଉଚୁ—ଦଖଣ୍ଡ ନୂଗା ବି ଆମେ ଚୋରି କରିପାରିବାନି ଖାଲି ନିଜର ମାନ ମହତ ଘୋଡ଼ାଇବା ପାଇଁ ?

ସମସ୍ତେ କହିଲେ ଆମ ଦେଶ ସ୍ୱାଧୀନ ହେଲେ ଆମ ଦୁଃଖ ପାଣି ପରି ବୋହିଯିବ—କିନ୍ତୁ କାହିଁ ?

ଗୁରେଇ ଉତ୍ତ୍ୟକ୍ତ ଅପର୍ତ୍ତିଁ କାନ୍ଧରେ ହାତ ରଖି କହିଲା, "ନାଇଁ, ତମେ ମୋ ମୁଣ୍ଡ ଖାଅ — ଯିଏ ଯାହା କରୁ—ତମେ ସେ ସବୁ ନଉଚ୍ଛୁଣା କାମ ଆଉ କରିବନି । ଦୁଃଖ ଆମର ଦିନେ ଘୁଞ୍ଚିବ— ସବୁଦିନ କଣ ଏକା ଯାଉଥିବ ?

ଅପର୍ତ୍ତିଁ ଗୁରେଇ ଆଡ଼େ ଚାହିଁ କହିଲା—ଗୁରେଇ, ଭଲ ଲୋକ ହେଲେ ଦୁଃଖ ଭୋଗିବାକୁ ହୁଏ—

ଗୁରେଇ କହିଲା—ହଉ ଦୁଃଖ ।

—※※—

# କାଳା ବଉଦ

ମହାପାତ୍ର ନୀଳମଣି ସାହୁ

ପୁଅମାନେ ଭିନେ ହୋଇ ଯାଇ ତାଙ୍କୁ ମାଡ଼ ଦେଇ ସାରିଲା ପରେ—

ପାହାର ବସିଥିବା ସେଇ କାଳିଆ, ନୋଥରା ହାତ ପାପୁଲିକି ବୁଢ଼ିଆ ପୁଣି ଥରେ ଦଳିଲା । ଚୂନପତ୍ର ତ ପାଟିକି ପକେଇ ଦେଇଥିଲା, ତେବେ ଖାଲି ପାପୁଲିଟାକୁ ଦଳି କି ଲାଭ ? ଲାଭ ଆଉ କଅଣ ? ବୁଢ଼ିଆ ଗୁହାଁଲା ଗହ୍ମର ଆଡ଼କୁ; ଏତେ ଲମ୍ବା ଗହ୍ମର—! ଟେଲା ଅଉ ବେଣା ଭର୍ତ୍ତି । ବୈଶାଖ ଖାଞ୍ଚିରେ ଖରା ଖାଲି ନାଚୁଚି, ଖଜୁରିଆ ପୋଖରୀ ବନ୍ଧ କଡ଼େ କଡ଼େ । ବାଞ୍ଛା ହଳ ବୁଲେଇସାରି ଫେରୁଚି । ଦେହରୁ ଝାଳ ନିଗିଡ଼ି ପଡ଼ୁଛି—ସେନ୍ତେରା ଚମ—ନୋଥରା ଦେହ ! ମୁହଁଯାକ ଦାଢ଼ି—ତମ୍ବାକିଆ ରଙ୍ଗ, କହରା ପଡ଼ିଯାଇଛି । ଫେଣ୍ଟ ଲାଗିଯାଉଛି ପିଠିରେ । ବଳଦ ଦି'ଟା ଘରମୁହାଁ ଧାଇଁଛନ୍ତି, ବାଞ୍ଛା ତାଙ୍କ ପଛରେ । କାହା ଆଡ଼କୁ ଅନେଇବାକୁ ତାର ତର ନାହିଁ କି ବଳ ନାହିଁ । ଦୋ'ଛକ ହୁଡ଼ା ଉପରକୁ ବୁଢ଼ିଆ ଆସି ଡାକିଲା—"ବାଞ୍ଛା କି ରେ ?" ଉତ୍ତର ଆସିଲା ପଦୁଟିଏ 'ହଁ' । ଆଉ ପଦେ କଅଣ କହିଲା ବେଳକୁ, ବାଞ୍ଛା ତୋଟା ବରଜ ଗୋହିରୀ ଭିତରେ ହେଲାଣି ।

ବୁଢ଼ିଆ ଫେର ଆସିଲା, ସେଇ ଏକୁଟିଆ ଆମ୍ବଗଛ ମୂଳକୁ । ଛୁଇ ହେଉଚି—ପବନ ଦଉଚି । ଆମ୍ବଗଛ ମୂଳରେ ବରଜଚୂଆ । ପାଣି ଶୁଖିଗଲାଣି । ଆଉ ଯାହା ଅଛି, ସବୁ ଗୋଳିଆ । କେରାଣ୍ଡି

ସବୁ ପାଣିରେ ପହଁରୁଚନ୍ତି । ଚଲ ଉଡ଼ୁଚନ୍ତି ଆକାଶରେ । ଝାଁପି ନଉଚନ୍ତି । ବୁଧିଆ ଗୃହାଁଲା । କଅଣ ସେ ଭାବୁଚି ? କହ୍ତି ନାହିଁ— ଏଇ ଗୋଟିଏ କଥା ଖାଲି—ଯାତ୍ରା କାଲି ରାତିରେ ବାଞ୍ଛାଦାସ ଖଞ୍ଜଣୀ ଧରି ଭଜନ କରୁଥିଲା, "ଝାଁପିବ କାଳ-ଛଞ୍ଚାଣ, ମନେ ନାହିଁ କି ?" ସତୁରି ବରଷର ବୁଢ଼ା ବୁଧିଆ—ତା ଦେହ ଶୀତେଇ ଉଠିଲା । ହଁ ହଁ—ମନେ ଅଛି—ମନେ ଅଛି । ମନେ ନ ଥିଲା, ଏବେ ମନେ ପଡ଼ିଲାଣି । ବଅସ ହୋଇଗଲା, ବେଳ ଆଖର ହୋଇ ଆସିଲାଣି । ପାଣି ବି ଶୁଖି ଗଲାଣି । ଏଥର ଖାଲି ଜୀବାତ୍ମା ଛଟର ପଟର ହେଉଚି । ହୋଇ ଆସିଲା ମାଟିଆ ଚଲ—ସାଙ୍ଗକୁ ନା ତଳକୁ ଖସିଲା । ଗଲା—ଗଲା, କେଜାଣି କେଉଁଠିଏ ଝାଁପି ନେଲା ରେ ! ଶୂନ୍ୟରେ କେବଣି ଛଟରପଟର ହେଉଚି । ବୁଢ଼ିଆ ଦେହ ପୁଣି ଶୀତେଇ ଉଠିଲା । ଝାଁପି ନେବ—ଏଇମିତି ଝାଁପି ନେବ— କାଳ ଛଞ୍ଚାଣ । ଜୀବାତ୍ମା ଏଇମିତି କଲବଲ ହଉଥିବ । କେତେଟା ଟୋକୁଜଗା ପିଲା ଲଙ୍ଗଳା ହୋଇ, ପାଞ୍ଚଣ ଖଣ୍ଡେ ଖଣ୍ଡେ ହାତରେ ଧରି ପାଟିକରି ଦଉଡ଼ିଲେ—"ହୋ-ଓ-ଓ, ନେଲା ନେଲା—ମାର୍ ଟେକା—ହେଇ ସେ ଗଛ ଉପରକୁ ଗଲା । ପକା ପକା, ଠେଙ୍ଗା ପକା । ଆହା ହା ହା ଉଡ଼ିଗଲା ତ ।" ଆଉ ପାରିବୁନି ରେ ବାପୁ, ଆଉ ପାରିବୁନି । ଚଲା ଯେ ସେ ଗଲା । 'ଗଲା ପୁଣି ବାହୁଡ଼ି ନଇଲା ଚଲା କୋଇଲା' ଗୁଣୁ ଗୁଣୁ ହେଲା ବୁଧିଆ ମନେ ମନେ ।

ବୁଧିଆକୁ ନିଦ ଲାଗି ଯାଉଚି । ବୁଧିଆ ଶୋଇପଡ଼ୁଚି ।

'ବାପା, ହେ ବାପା, ବାପା, ବାପା, ବା, ଆରେ ଖାଇବୁ ପରା ? ବାପା !'

"ଏଁ, କିଏ ? ହଁ ଇଏ କଅଣ କହୁଚୁ ?" ପୁଣି ଶୋଇ ପଡ଼ିଲା । ପୁଣି ଡାକିଲା ଦୁଃଖୀ—'ବାପା' ଦେହରେ ହାତଦେଇ

ହଲେଇ ଦେଲା—"ବାପା, ଆଁରେ ଉଠୁନୁ କାହିଁକି ? ଖାଇବୁ ଟିକେ ? ଆସୁନୁ—ଉଠି ଆସୁନୁ !" ବୁଧିଆ ନିଦ ଭାଙ୍ଗିଲା । କିନ୍ତୁ ଆଖିପତା ମୁଦିହୋଇ ଆସୁଥିଲା । ଦୁଃଖୀ ଆଉ ଦି' ତିନିଥର ଡାକିଲା ପରେ ବିରକ୍ତ ହୋଇ ଚାଲିଗଲା—"ଶୋଇଚୁ, ଶୋଇଥା, କାହାର କଅଣ ଅଛି ? ଡାକିବ ବୋଲି ତ ଦଶ ଥର ଡାକିଲି । ଆଉ କିଏ ଡାକୁଥିବ ନାଗିପଡ଼ି ? ନ ଉଠ୍ । ଉଠିଥିଲେ ଯାଇ କଂସାଏ ମାରିଥାନ୍ତି — ନ ହେଲେ ଶୋଇଥା — କଅଣ କାମ କରି ପକେଇବୁ ଯେ — "ଆଉ କଅଣ କହି କହି ଗୁଣୁଁ ଗୁଣୁଁ ହୋଇ ଚାଲିଗଲା ସେ — ଆଉ ଶୁଭିଲାନି ।

ସେ ଚାଲିଗଲା ପରେ ବୁଧିଆର ନିଦ ଭାଙ୍ଗିଲା । ଉଠି ବସିଲା । ପେଟ ଲାଗିଯାଉଚି ପିଠିରେ । ବୁଧିଆ ନିଜ ପେଟକୁ ଅନେଇଁଲା । ଏଡ଼େ ବଡ଼ ପଖାଳଖିଆ ଠୁମୁକା ପେଟ — କୁଆଡ଼େ ଯାଇ ଲାଗି ଯାଇଚି । ବୁଧିଆ ମନକୁ ମନ ହସିଲା । ଦେହଟା ଝିମ୍ ଝିମ୍ ଲାଗୁଚି । ଦିନ ଦିପହରରୁ ବଳିଗଲାଣି । ଏଇ ଯେ ତା' ପୁଅ ଦୁଃଖୀ, ଖାଇବା ପାଇଁ ତାକୁ ଡାକିବାକୁ ଆସିଥିଲା, ସିଏ କଅଣ ତା'ମନକୁ ସ୍ନେହରେ ଆସିଥିଲା ? ମିଛ ମାୟା ଏ ସଂସାର — ସବୁ ମାୟା — ସବୁ ଛାଇ । ଏଇ କାଆଲି ପରି ଲାଗୁଚି । ବୁଧିଆ ହୋଇଥିଲା ଗଜା ଟୋକା — କଞ୍ଚା ବଅସ — ଟାଣୁଆ ବାହା — ଚଉଡ଼ା ଛାତି, ଏଡ଼େ ମୋଟ ଅଣ୍ଟା, ଗବରା ଯୁଆନ, ମାଟି ଚୋକେଇ ଧରିଲେ ପାନ ବରଜକୁ ଦଶ ଜଣ ମଣିଷ ଥକିଯିବେ । ପାଣି ମାଠିଆ ଧଇଲେ ଦଶ ଜଣଙ୍କ ଅଣ୍ଟାରେ ଯାଦୁ ହୋଇଯିବ । ସେଇ ବଅସରେ ସେ ବାହା ହୋଇଥିଲା 'ଦୋଳୀ'କୁ ।

ତା'ପରେ ଦିନଯାକ ଖଟି ଖଟି, ଯେତିକି ସମୟ ବିଶ୍ରାମ ମିଳେ, ସିଏ ବେଶି ନୁହେଁ, ନିଦ ଭଗଟା କଟିଗଲା ପରେ ମୋଟେ

ଦ୍’ ଘଣ୍ଟା । ଏତେ ବଡ଼ ଦୁନିଆଁ ଭିତରେ ଆଉ କୋଉ ପ୍ରକାର ମଉଜ ମଜ୍‌ଲିସ୍ ଅଛି ସେ ଜାଣି ନ ଥିଲା । ଜାଣିଥିଲେ ବା କେଇ କାହିଁ ? ସେଇ ଦୋଳି, ସେଇ ଥିଲା ଚୌକି, — କଣ୍ଢେଇ ଚୌକି, ତା ଆଉ ପାଖରେ ସବୁ ମଉଜ ମଜ୍‌ଲିସ୍ ଦାବି କରିଥିଲା ସିଏ । ସବୁ, ତା’ର ପୂରଣ ହେଉଥିଲା ବି — ନିଜର ଅଧିକାରରେ । ନିସ୍ତା ବି ।

ସେଇଠୁ ତା’ର ହେଲେ ପୁଅ ଝିଅ ସାତ କି ଆଠ । ଗୋଟି ଗୋଟି ହୋଇ । ବଡ଼ ପୁଅ ଦୁଃଖୀ—ତା ତଳକୁ ସୁଖୀ, ସେଇଠୁ ସୁଲି, ସନିଆ, ବୁଲି, ରାଜ, ବକେଇ—ଆଉ ଛୁଡ଼ି । ପୁଅ ସବୁ ବଡ଼ ହେଲେ, ଝିଅ ସବୁ ବଡ଼ ହେଲେ । ତାଟିଆ ବଦଳରେ କଂସା ନୋଡ଼ା ହେଲା । ଥାଳିଆ ଜାଗାରେ ଥାଳି ନୋଡ଼ା ହେଲା । ମଜୁରି ବି ଦଶ ପଇସାରୁ ଛଅଣା ହେଲା ।

ତା’ପରେ ପୁଅ ସବୁ ବାହାହେଲେ । ଝିଅ ଗଲେ ଶାଶୁ-ଘରକୁ । ବୁଧିଆ ଏହା ଭିତରେ ବୁଢ଼ା ହୋଇ ଯାଇଚି, ଆଉ ଦୋଳି ପାଲଟି ଯାଇଚି ବୁଢ଼ୀ । ପୁଅମାନଙ୍କ ମୁଣ୍ଡକୁ ହାତ ପାଇଚି । ପାଞ୍ଚ ପଇସା କମେଇବାକୁ ସାମର୍ଥିଆ ହେଲେଣି । ବୋହୂମାନେ ସାଆନ୍ତ ଘର ମୂଲ ଲାଗିଲେଣି । ବଲ ବାଛୁଲେଣି । ତାଙ୍କର ହେଲେଣି ପୁଣି ଦଇ ଦଇଟା ଛୁଆ । ସେଇ ଛୁଆଙ୍କ ପାଇଁ ଚୁଡ଼ା ଚୂନା ଆଉ ଚନା ବି ଆସିଲାଣି । ଗଲାଣି — ବଦଳି ଗଲାଣି !

ଚକ ଓଲଟିଚି··· ···

ପରଷୁଅ ଆଇଲାରୁ ଭଗାରି ରହିଲେ ମାଆପେଟରେ । କଳିକଜିଆ ହେଲା । ପିଠାପିଠି — ବାଡ଼ଆବାଡ଼ି — ନ୍ୟାୟୁନିଶାପ । ବୁଢ଼ା ବାପ ମାଆଙ୍କୁ ପୋଷିବାକୁ ସମସ୍ତେ ଅମଙ୍ଗ । କିଏ ଏଇ ନିକମା ବୁଢ଼ାବୁଢ଼ୀଙ୍କ ଦାଉ ସମ୍ଭାଳିବ ? ବୁଧିଆ ଦେହରେ ପାହାର ବସିଚି । ତା ହାତ ପାପୁଲି ଫୁଲି ଯାଇଚି । ରକ୍ତ ଥିଲେ ରକ୍ତ

ବୋହୁଥାନ୍ତା, କିନ୍ତୁ ରକ୍ତ ତ ଶୁଖିଗଲଣି, ଖାଲି କାକଥା ସେମାନଙ୍କର ପଡ଼ି ଫୁଲି ଯାଇଚି । ସେ ରୁଷିଚି—ନ ଖାଇ ନ ପିଇ, ଆମ୍ବଗଛ ମୂଳେ ଆସି ଶୋଇଚି । ସେଥିପାଇଁ ବଡ଼ ପୁଅ ଦୁଃଖୀ, ଆଇଥିଲା ତାକୁ ଡାକିବାକୁ ଖାଇବାପାଇଁ । ଆଗ ଆସି ସୁନା ପାଗ ବାନ୍ଧିଲା । ଆସିଲା ଭଲ କଲା । ବୁଢ଼ାବାପ—ଖାଇବାକୁ ନ ଦେଇ ତଡ଼ିଦେଲେ ପାପ ତ ଯାହା ହବ ହବ, ପୁଣି ଲୋକେ ହସିବେ । ସେଇଥିପାଇଁ ଦୁଃଖୀ ଆସିଥିଲା । ଗୁରି ଥର ଡାକି ଡାକିଲା । ନ ଉଠିଲାରୁ ଗୁଲିଗଲା । ଭଲ କଲା, ଆସିଲା । ନିଜ ଉପରୁ ତ ଦୋଷ ଛାଡ଼ିଗଲା ! ! ! ଆଉ କିଏ ଟଦେ କଏ କହିବ ? ବୁଢ଼ା ବାପକୁ 'କାଲିକି ନ ଡାକିଲ' ବୋଲି ଉଦେଇବ ? ବୁଧିଆ ହସିଲା । ପୁଣି ଥରେ ମନକୁ ମନ ହସିଲା । "ମିଛ ମାୟା ଏ ସଂସାର କେହି ନୁହନ୍ତି କାହାର ।" ସତ କଥା, କଏ କାହାର ? ସ୍ନେହ କଅଣ ? ପୁଅ କଏ ? କି ବାପ କାହାର ?

ଏଇ ଦୁଃଖୀ—ସିଏ ପୁଣି ବଡ଼ ପୁଅ । ଦୁଃଖରେ ପାଇବାରୁ ତା'. ମା ତା ନାଁ ଦେଇଥିଲା ଦୁଃଖୀ । ସିଏ ଅବା କେଉଁ ସୁଖ ଦେଲା ? ତା' ତଳକୁ ଯୋଉ ପୁଅ ଶୁଖା, ତା' ଜନ୍ମ ବେଳକୁ ତା ମା ଶୁଖି ଯାଇଥିବାରୁ ତା ନାଁ ହେଲା ଶୁଖା । ସେଇ ଏବେ ବାହା ହେଇଚି—ବରଷ ଗୋଟେ ହେବନି—ଛଉଡ଼ା ଟୋକା । କଳା ମଚମଚ ହେଇ ପାଞ୍ଚହାତର ମରଦ । ସଜଡ଼ା କେଶ—ଗଜରା ନଶ ।.ଆଜି ମାଇପକୁ ଦେଖି ମାଆକୁ ପାସୋରି ଦେଲା । ଏଇମିତି ତ ସବୁ କଥା ଏଇମିତି । ତେବେ ସେ କାହାକୁ ରୁଷିଚି ? ରୁଷିଚି କାହିଁକି ? ହ-ଅ ସତେ ତ ! ସେ ଏବେ ରୁଷିଲା କାହିଁକି ? ହଜି-ଯାଇଥିବା ସିନଅ ସୁଆଗ ପୁଣି ଥରେ ମିଳିବ ବୋଲି ? ନା-ନା-ନା, ଯାଉ ସେ । କି ଲଭ ସେଥିରେ ? ବରଂ କ୍ଷତି । ଯାହା ହଜିଚି

ସେ ଯାଉ । ଆଉ ନ ମିଳୁ, ଭଲ । ସୁନା ହଜିଲେ ଦୋଷ; ପୁଣି ମିଳିଲେ ବି ଦୋଷ । ଯାଉ-ଯାଉ, ବହୁତ ଶାନ୍ତି ହେଇଛି ସେ ମାୟାରେ । ମୋହରେ ସେ ବୁଡ଼ି ଯାଇଥିଲା । ମାଇପ, ପୁଅ, ବୋହୂ, ନାତି, ନାତୁଣୀ, ଘର, ଦ୍ୱାର ସବୁଥିରେ ସେ ମିଶି ଯାଇଥିଲା । ଏବେ ଯାଉନ୍ତୁ ଯାଉ । ବୁଧିଆର କୋରଡ଼ିଆ, ଗହ୍ୱର ଆଖି କଣରେ ଲୁହ ଦେଖାଦେଲା । ମାଛି ଯୋଟାକାତେ ଆସି ଆଖି କଣ ପାଖେ ଭଣ ଭଣ ହେଲେ । ତାଙ୍କୁ ସବୁ ଉଡ଼ଉ ଉଡ଼ଉ ବୁଧିଆ ଗୁଣି ଗୁଣି ହେଲା—"ଘର ବୋଲି ଅର୍ଜିଲି ଯେତେ ପଦାର୍ଥ ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ—"

ଖର ଗରମ ହଉଛି—ଓଃ ଖର ଗରମ—ଚଇତା ଝାଞ୍ଜି ପିଟୁଛି । ବୁଧିଆ ଅନେଇଲା ଗହ୍ୱର ଆଡ଼କୁ । ଗୋପୀ ମହାପାତ୍ର ପାନବରଜ ପାଖ ଢେଙ୍ଗା ଉପରେ ଯେଉଁ ତାଳଗଛ । ଶାଗୁଣା ବଇଠନ୍ତି ସେଥିରେ । ଫୁଲଶାଗୁଣା ବଠା ପୁଣି ଉଡ଼ିଗଲେ ସେ ଆଡ଼କୁ ମଝି ଖଣ୍ଡ ଦଣ୍ଡାରେ ମଡ଼ ପଡ଼ିଛି—ଶ୍ୟାମର ମହାପାତ୍ର ଘର 'ବଉଁଳା ବଳଦ' । ହାଣ୍ଡି ପରିକା ହେଇଥିଲା । ହଡ଼ା ହେଇଥିଲା ଚୁହୁଁ ଚୁହୁଁ କେଇଠା ଦିନରେ । ସେଇ ବଳଦକୁ ବୁଧିଆ ସାଧି କରିଥିଲା । ଯୁଆନ ବେଳ ସେତେବେଳେ । ଦେହରେ କାଠିଏ ବଳ । ସେ ବଳଦ ନୂଆ ହୋଇ ଆସିଥାଏ । କେହି ପାରିଲେନି ତାକୁ । ବୁଧିଆ ତାକୁ ନିଜ ହାତରେ ହଳରେ ମହଣି କରିଛି । ସେଇଦିନୁ ବର୍ଷ ବର୍ଷ ଧରି ବୁଧିଆ ପାଞ୍ଚଣ ସେ ବଳଦ ଦେହରେ ବାଜିଛି । ତା' ଉମରରୁ ବୁଧିଆ ଉମର କଣ୍ଟୁକଣ୍ଟୁ । ସେ ବଳଦ ଏବେ ଆଗଭୁରା ହେଇ ଚାଲିଗଲା । ଚାଲିଗଲା—ଭଲ ହେଲା । ଆଗ ହୋଇ ଗଲା, ସୁନା ପାଗ ବାନ୍ଧିବ । ଆଉ ଏ ।

ପଞ୍ଜରେ ରହିଚ । ଗୁହ ପୋନ୍ତୁ ପୋନ୍ତୁ ଦିନ ସରିବ ନାହିଁ । ବୁଢ଼ିଆ ଭାବନାର ଅନ୍ତ ନାହିଁ ।

ଈଶାଣ କଣରେ କଳା ହୋଇ ମେଘ ଖଣ୍ଡେ ଘୋଟି ଆସୁଚ । ଖରାଦିନିଆ ମେଘ । କୁଆପଥର ବର୍ଷା ହୋଇପାରେ । ଆଉ ବ ଦିନ ବେଶି ନାହିଁ । ଓପରଓଳ ଆସି ହେଲଣି । ବୁଢ଼ିଆର ମୁଣ୍ଡ ଧମକିଲଣି । ଦିହ ଝାଳରେ ଗୋଟା ଗୋଟା ହୋଇ ଯାଉଚ । ପାଟି ଅଠା ଲାଗୁଚ । ଘର ଅଣକଡଆ ଲଗୁଚ । ଝପ୍ ଝପ୍, ଟପ୍ ଟପ୍ ମାଡ଼ିଅସିଲା । ଧୂମାଳ ପବନ ! ଗଞ୍ଜେରରୁ ହଳ ଗୁଡ଼ଦେଇ ହଳିଆ ଧାଇଁଲେ । ବଳଦଗୁଡ଼ାକ ଲଞ୍ଜ ଟେକ ଏକମୁହାଁ ହୋଇ ଧାପୁଡ଼ିଛନ୍ତ । ବୁଢ଼ିଆ ଚୃହିଁଚ । ଆରେ ଏ କଅଣ ? ବର୍ଷା ? ଓହୋ ବର୍ଷା ! ପାଣି ! କେତେ ଆଶା—କେତେ ଥୟା ! ଓହୋ, ଶୁଖିଲ ଟେଳା ଉପରେ ଘାସ ଉଠିବ । ଚୂପୁଡ଼ା କ୍ଷେତ ମାଟିରେ ଗଜା ଉଠିବ—ଧାନ ଫଳିବ । ପୁଣି ଥରେ । ପୁଣି ଥରେ ନୂଆ କଥା ହେବ । ପୁରୁଣା ହବ ନୂଆ । ଶୁଖିଲ ହବ କଞ୍ଚା । କସରା ହବ ସବୁଜ । ଆରେ ? କ ଖେଳରେ ଇଏ ? କ ତାମସା ଏ ? ବୁଢ଼ିଆ ହସିଲା । କିଛି ବୁଝିପାରିଲା ନି । ଶୁଖିଲା ମାଟି ଉପରେ ନୂଆ ପାଣି ପଡ଼ି ଏକ ଗନ୍ଧ ଉଠିଲା । ଏଇ ଗନ୍ଧରେ ମଣିଷ ପୁଣି ଭୁଲିବ । ବାସନା ଶୁଂଘିବାକୁ ମିରିଗ ପରି ଏଣେ ତେଣେ ଘୁରି ବୁଲିବ—ଅପନ୍ତରା ବଣ—ପାହାଡ଼ । ପାଗଳେ ! ବଢ଼ ପାଗଲ! ନିଜ ଦେହରେ ଯୋଉ ଗନ୍ଧ ଅଛି ତାକୁ ଜାଣିପାରୁନ; ଆଉ କୋଉ ଗନ୍ଧରେ ଧାଇଁଚ ? ବୁଢ଼ିଆ ହସିଲା । ସତୁରି ବରଷ ହେଲଣି ମତିଭ୍ରମ ହେଲା କ ଆଉ ? ତାଳପତର ଗୋଟେ ବଡ଼ ପଙ୍ଖା ଧରି କିଏ ସେ ବାବାଜି ଜଣେ ଛିଡ଼ା ହୋଇଛନ୍ତ ଗଛ ଆର ପାଖରେ—ବୁଢ଼ିଆ ପଚାରେ । "କିଏ ସେ ? ଗୋସେଇଁ ମହାପ୍ରୁ" ବୁଢ଼ିଆ ଗଦ ଗଦ

ହୋଇ ପଡ଼ିଲା । ଦାଢ଼ୀ ଲମ୍ବିଚ – ଜଟା ଓହ୍ଲାଇଚ – ଗେରୁଆ ଲୁଗା । ଅଲେଖ ବାବାଜି ହେବେ ପରା ? ବାବାଜି ହସି ହସି କହିଲେ, "ସବୁ ମାୟା – ସବୁ ମାୟା ବାବା ! କାୟା ଛନ୍ଦରେ ଛାୟାପରି ସବୁ ମାୟା । ଏ କଳା ବଉଦ ପରି ସବୁ ମାୟା ! ମାୟାରେ ଆତଯାତ ଏ ସଂସାର । ମିଛରେ ଏ ଖେଳ ।"

ବୁଧିଆ କେବଳ କହିଲା, "ହଁ ସତେ ତ ! ସତ କଥା । ଏଇ କଳା ବଉଦ ପରି ବି ମୋହ ଘୋଟିଆସେ । ପୁଣି ଏଇ କଳା ବଉଦ ପରି ମାୟା ଛାଡ଼ିଯାଏ ଆପେ ଆପେ ।"

ବାବାଜି ହସିଲେ । ବୁଧିଆ ଭାବିଲା –

"ଆରେ ଶୁଖା ଖଡ଼୍ ଖଡ଼୍ ।
ମିଛ ମାୟାରେ ପଡ଼ି ହେଉ ଲଡ଼ବଡ଼ ।
ଆରେ ଶୁଖା ଖଡ଼୍ ଖଡ଼୍ ।

କଳା ବଉଦ ଅପସରିଗଲା । ମେଘ ବି ଛାଡ଼ିଗଲା । ଖରାଦିନିଆ ମେଘ – ଉଡ଼ା ମେଘ – ଛାଡ଼ିଯାନ୍ତା ନାହିଁ ?

......ବାବାଜି ଆଗକୁ ଚାଲିଲେ ? ବୁଧିଆ... ...? ? ?



# ରକ୍ତ ମାଂସ ତଳେ

ଶ୍ରୀ ରାଜକିଶୋର ମହାନ୍ତି

ଉସ୍‌ମାନ ଉଚ୍ଚ ପାଟିରେ ହସିଉଠିଲା, 'ହ୍ୱାଁ···ହା···ହାଃ' । ଏମିତି ସେ ଏବେ ହସୁଛି, ଯାହାକୁ ଦେଖୁଛି ତାକୁ ଅନାଇଁ ହସି ଉଠୁଛି । ଚଲ ଚଲ ଗହ୍ୱରିଆ ଆଖିରେ ଚାରିଆଡ଼କୁ ଚାହୁଁଛି । ଆଗକୁ ପାଦ ପକାଉଛି, ପୁଣି ଫେରୁଛି ପଛକୁ—ପୁଣି ଆଗକୁ । କେଉଁଠି ଅଟକି ରହୁନାହିଁ, କାହାକୁ କିଛି ପଚାରୁ ନାହିଁ, ଖାଲି ହସି ଉଠୁଛି ।

ତା' ହସ ଶୁଣି ଲୋକେ ଡ଼ରୁଛନ୍ତି, ମାଇପେ କବାଟ କିଳୁଛନ୍ତି, ଛୁଆପିଲା ରଡ଼ ଛାଡ଼ୁଛନ୍ତି । ଆକାଶ, ମାଟି, ପାଣି ପବନରେ ପୁଣି ଖେଳି ଯାଉଛି ହା ହୁତାଶର ଲହଡ଼ି, ଲହୁ ଲୁହର ଝଡ଼ ତୋଫାନ । ଉସ୍‌ମାନ କାହାରି କଥା ଶୁଣୁନାହିଁ । ପାଚି ପାଚି ଆସୁଥିବା ଲମ୍ବା ଦାଢ଼ିଟାକୁ କୁଣ୍ଡାଉଛି; ନୂଖୁରା ଭୂତୁରା ବାଳଗୁଡ଼ା ଝେଲାଉଛି, ପଶିଲା ପଶିଲା ଆଖି ଦିଟାରେ ଜଳ ଜଳ କରି ଚାହିଁ କେତେବେଳେ କହୁଛି, "ମାର୍ ନା, ମାର୍ ନା ତାକୁ, ଛାଡ଼ ଦେ, ଆରେ ଛାଡ଼ ଦେ । ଛାଡ଼ବୁନି ତାକୁ ? ଅଲବତ୍ ଛାଡ଼ିବୁ । ତୋର ବାପ ଛାଡ଼ିବ, ଆରେ······ ।" ପୁଣି ସେ ଆଗେଇ ଚାଲୁଛି, ଅଟକୁ ନାହିଁ, ଦଉଡ଼ୁଛି । କେତେଦିନ ହେଲା ଏମିତି ଦଉଡ଼ି ଦଉଡ଼ି ଗୋଡ଼ ଆଣ୍ଠୁ ତାର ଛିଣ୍ଡିଗଲାଣି, ଗାରଗାରିଆ ଲୁଙ୍ଗିଟା ଚିରି ଫୁଟି ଗଲାଣି । ଆଣ୍ଠୁ ଯାକେ ମାଡ଼ି ଆସିଲାଣି ନାଲି ଧୂଳି କାଦୁଅ

ମାଟି । ସେ ଆଡ଼କୁ ସେ ନଜର ରଖୁନାହିଁ, ଫୁଙ୍ଗୁଳା, ମସିଆ ଚଗ୍‌ କାମିଜଟାକୁ ଓଟାର ଓଟାର ଆଗକୁ ଚାଲୁଛି ।

ରେଲ ଷ୍ଟେସନ ଆଉ ଷ୍ଟିମର ଘାଟଠାରେ ସେ ଠିକଏ ଅଟକିଯାଏ । ଚାରିଆଡ଼କୁ ଚାହେଁ, ଜଣ ଜଣ କରି ଯେପରି ଚିହ୍ନିବାକୁ ଅନାଏ । କିନ୍ତୁ ସେ କାହୁ ପଚ୍ଛରେ ନାହିଁ । ଛିନ୍‌ଛତର ହୋଇ ଅତରଛରେ ପଳାଇ ଯାଉଥିବା ଯାତ୍ରୀଙ୍କ ଆଡ଼କୁ ଚାହିଁ ହସି ହସି ବଡ଼ପାଟିରେ ସେ କହେ, "ମାରନା, ମାରନା ତାକୁ, ଛାଡ ଦେ, ଆରେ ଛାଡ଼ ଦେ । ଛାଡ଼ିବୁ ନି ତାକୁ ?" ଆଖି ଦିଟା ତାର ବଡ଼ ବଡ଼ ହୋଇ ଉଠେ, ଚଉଡ଼ା କପାଳରେ ରେଖାଗୁଡ଼ାଏ ଟାଣି ହୋଇଯାଏ ।

ତା ପାଟି ଶୁଣି ଗୋଳମାଳ ଦବିଯାଏ; ଭୟ ବଢ଼ି ଉଠେ; ପିଲଙ୍କ ଦୁଷ୍ଟାମି ବନ୍ଦ ହୋଇଯାଏ । ତାକୁ ସମସ୍ତେ ଚିହ୍ନନ୍ତି । ସେ ଉସ୍‌ମାନ; ଗୁଣ୍ଡା ଉସ୍‌ମାନ—କଂସେଇ ଉସ୍‌ମାନ । ଦୟାମୟା ତାର ନାହିଁ । ମଣିଷର କାନମୁଣ୍ଡା ଦେଖି ପାହାର କଷିବାକୁ ବସେ—ଗୋଡ଼ ଖୋଜି ପିଟିବାକୁ ଧାଏଁ । ଦିନ ଦି'ପହରେ, ଲୋକ ଗହଳି ଭିତରେ, ମେଳା ମେଳା ପୁଲିସ ପଲରେ ସେ ଠେଙ୍ଗା ବୁଲାଏ, ଉକାପୂତ କରେ । ବଡ଼ଘର ଝିଅ ବୋହୂଙ୍କ ଗଳାରୁ ହାର କାଟେ, ଆଖି ଦେଖାଇ ଜବତ୍‌ କରି ଲୋକଙ୍କଠାରୁ ଟଙ୍କା ପଇସା ଛଡ଼ାଇ ଆଣେ । ଯେତେ ଚଞ୍ଚଳ ହାତକୁ ମାଲ ଆଣେ ସେତେ ଚଞ୍ଚଳ ହାତରୁ ଉଡ଼ାଇ ଦିଏ । ଉସ୍‌ମାନ, ଚୋର ଉସ୍‌ମାନ—ଉକାପୂତ ଉସ୍‌ମାନ ତାର ଚାପୁଡ଼ା ଖାଇଲେ ମଣିଷ ହୁଏ ପାଉଁଶ, ନାଲ ଟହଟହ ମହୁଆ ଆଖି ଦେଖିଲେ ବାଟ ଛାଡ଼େ ବାଘ : ଆଇନ୍, କାନୁନ୍ ସେ ମାନେ ନାହିଁ । ଜେଲ, କଚେରୀକୁ ଡରେ ନାହିଁ । ପୁଲିସ ଧରିଲେ ଘୁମେଇ ଘୁମେଇ ଜେଲକୁ ଯାଏ । କଷି କରି ସେଠି ଘଣା ଟାଣେ ।

ସୁଙ୍ଘିରେ ହାକୁଟି ଗୁଡ଼େ। ନାଲି ଆଖି ଝଲମଲ କରି ଦାଢ଼ି ସାଉଁଳି ସାଉଁଳି ତୋବା, ତୋବା ଡାକେ। ଭୂଇଁ ଉପରେ ଢଳିପଡ଼ି ଜୋରରେ ନିଶ୍ୱାସ ଛାଡ଼େ; ମଶା ତାଉଁଶ ହୁରୁଡ଼ାଏ।

ଏଇ ଉସ୍‌ମାନ—ମଦୁଆ, ଉଜାଗୁତ, ଦାଗୀ ଉସ୍‌ମାନ ପାଗଳ ଏବେ ହୋଇଛି। ତା ବସ୍ତିର ଅଣ୍ଟା ଘାଂ ପଡ଼ିଛି। ସମସ୍ତେ କହୁଛନ୍ତି, "ଅଗର ଉସ୍‌ମାନ ଚଚା ଆଚ୍ଛା ହୋତା ତୋ ହାମ୍‌କୁଭି କୁଛ୍ ମିଲଯାତା।"

ମହମ୍ମଦ ଆସୁଛି ତାକୁ ଡ଼ାକିବାକୁ, ଶୋବାନ ଆସୁଛି ଖୁସାମତ କରିବାକୁ, ଗଫୁର ଆସୁଛି ଭଦ୍ରଲୋକ ସାଜି କଥାଟା ବୁଝିବାକୁ। ହାଲ୍‌ବର କହୁଛି "ଆରେ ଉସ୍‌ମାନ ଚଚା, ଲେ ଏଇ ଲାଲପାଣି ବୋତଲଟା ପକାଇ ଲେ। ଦେଖେଗା ଅବ ସବ୍ କୁଛ୍ ଥଣ୍ଡା ହୋ ଯାଏଗା।" ଉସ୍‌ମାନ ସମସ୍ତଙ୍କୁ ଅନାଏଁ, ଭଲକରି ଅନାଏଁ। ସେହି ଗହ୍ୱରିଆ ଆଖି ଦିଟା ତାର ଜଳିଉଠେ, ଗୁମ୍ଫ ଭିତରଟା ଫୁଲି ଫୁଲି ଉଠେ। ଉଚ୍ଚ ହସ ହସି ସମସ୍ତଙ୍କୁ ସେ ବାଡ଼େଇବାକୁ ଦଉଡ଼େ। ଗୁଡ଼ିପିଡ଼ି ହୋଇ କିଏ କୁଆଡ଼େ ପଳାନ୍ତି। ଉସ୍‌ମାନ ପାଗଳାମି ଦେଖାଏ, "ମାରନା, ଆରେ ମାରନା ତାକୁ।"

ବେଳ ବୁଡ଼ ଆସିଲେ ତାର ପାଗଳାମି ଟିକିଏ କମି ଆସେ। କାହା ପିଣ୍ଡା କରରେ, ପାଇଖାନା ପଛପଟେ, ନ ହେଲେ ବସ୍ତି କରର ଆଲୁଅ ଖୁଣ୍ଟତଳେ ପଡ଼ି ରହି ସେ ଆକାଶକୁ ଅନାଏଁ। ତାର ସେଇ କଂସେଇ, ଇସ୍ପାତ ଗୁମ୍ଫ ତଳେ କେତେ କଥାର ଲୁଚକାଳି ଖେଳ ଚାଲେ। ଆଖି ଆଗରେ ନାଚେ ଗୋଲମାଲିଆ ଦିନର କେତେ ନାଚୁଣି ଛବି; ଉଠପଡ଼ ଦୁନିଆର କେତେ ଚଳନ୍ତି ଛାଇ। ଉସ୍‌ମାନ ସବୁ ଦେଖେ।

ଗଫୁର ସେ ଦିନ ସକାଳୁ ଦେଇଛି ଦି'ବୋତଲ ମଦ ଆଉ ଅଣ୍ଡା, ମାଂସ ପେଟେ ଖାଇବାକୁ । ତା ପରେ ତା' କାନରେ ଫୁସ୍ ଫୁସ୍ କରି କଣ କହିଲା । ଉସ୍‌ମାନ ଯାହା ଶୁଣେ ତାହା ବିଶ୍ବାସ କରେ । ଯାହା ମନକୁ ଆସେ ତା କରେ । ଲୋକେ ତାକୁ ନିଆଁକୁ ଠେଲି ପଛରେ କାମ ହାସଲ କରନ୍ତି । ଗଫୁର କଥାରେ ଠେଙ୍ଗା ଧରି ସେ ଉଠିଲା ।

ସେ ଭାବିଥିଲା ଠେଙ୍ଗାଟାକୁ ବୁଲାଇ, ଆଖି ଦେଖାଇ ସବୁଦିନ ପରି ଟଙ୍କା ପଇସା ଛଡ଼ାଇ ଆଣିବ । ଦି'ଦିନ ମଉଜ କରିଦେବ । କିନ୍ତୁ, ଗଫୁର ସଙ୍ଗେ ଯାଇ ସେ ଯାହା ଦେଖିଲା, ସେତିକିବେଳଠୁ ତା'ର ମଥା ବିଗିଡ଼ିଗଲା । ହିନ୍ଦୁ ଓ ମୁସଲମାନମାନଙ୍କ ଘରଗୁଡ଼ା ହୁତୁହୁତୁ ହୋଇ ଜଳି ଉଠୁଛି । ପିଲା ଛୁଆ, ବୁଢ଼ା ବୁଢ଼ୀ ମରଦ ମାଇପେ ବିକଳରେ ଇଡ଼ଗୁଡ଼ ଦଉଡ଼ୁଛନ୍ତି । ବାଟଘାଟରେ ମଣିଷର ହଣା ଦେହ—ଲାଲ ରକ୍ତର ସୁଅ । ମାର ମାର ବୋଲି କିଏ ପାଟି କରୁଛି । ଚାରିଆଡ଼ୁ ଭାସି ଆସୁଛି ଉଚ୍ଛନ୍ନ କାନ୍ଦଣାର ସ୍ବର···ଉଃ, ଉଃ, ଆହାଃ ଆହାଃର କାନଫଟା ଚିତ୍କାର । ଉସ୍‌ମାନର ଗୋଡ଼ ଅଟକି ଗଲା । ଗୁଣ୍ଡା, ମଦୁଆ, ଦାଗୀ ଉସ୍‌ମାନ । ମଦ ପିଏ, ମଣିଷକୁ ଧମକ ଦିଏ, ହେଲେ ସେ ଖୁଣୀ ନୁହଁ । କାହାକୁ ସେ ଖୁଣ କରିନାହିଁ । କାହା ଦେହର ରକ୍ତ ସେ ଦେଖି ନାହିଁ । ଆଖିର ଲୁହ ଦେଖିଲେ ତାର କଂସେଇ ଛାତି ନିମିଷକେ ବରଫ ପରି ତରଳିଯାଏ । ଉସ୍‌ମାନ ଗର୍ଜିଉଠିଲା, "ଗଫୁର—ଆରେ ଏ ସବୁ କଣ ଗଫୁର ? ଗଫୁର ଦଉଡ଼ି ପଳାଇଲା । ଉସ୍‌ମାନର ବାଗ ଆଗରେ ମଣିଷ ଥିବୁ ପଡ଼େ ନାହିଁ । ଉସ୍‌ମାନ ଆଉ ଆଗେଇ ପାରିଲା ନାହିଁ । ସେଇଠି ଠିଆ ହୋଇ ରହିଲା—ନିର୍ଜୀବ ଗୋଟାଏ ଆଲୁଅ ଖୁଣ୍ଟ ପରି ଖାଲି ଠିଆ ହୋଇ ରହିଲା । ତାର ଆଗରେ କେତେ

କଣ ନେଇ କଏ ସବୁ ଦଉଡ଼ ପକାଉଥାନ୍ତି । ଗୁରୁଆଡ଼େ ଖାଲି ଧାଁ ଧପଡ଼ । କାନ୍ଦଣାର ସ୍ୱର ଭିତରେ ଖେଁ ଖେଁ ହସ—"ମାର ମାର," "ଗଲା ଗଲା" ପାଟି । ଉସ୍‌ମାନର ରକ୍ତ ତାତି ଉଠିଲା । ସେ ଆଗକୁ ଦଉଡ଼ିଲା ।

ଗୋଟାଏ ଜାଗାରେ ସେ ଅଟକି ଗଲା । ଗୁରୁଟା ଯୁବତୀଙ୍କ ଛାତିରେ ଛୁରୀ ଭୁଷିଦେଇ କଏ କୁଆଡ଼େ ଦୁମ୍ ଦୁମ୍ ହୋଇ ଦଉଡ଼ ପକାଇଲେ । ଗଛ କାଟିଲା ପରି ଭୁସ୍ ଭସ୍ ହୋଇ ତଳେ କଚ୍ରଡ଼ ହୋଇ ପଡ଼ିଲେ, ଗୁରୁଟି ଯୁବତୀ । ଧୂସର ଧୂଳି ଉପରେ ଗୁରୁଟା କଞ୍ଚା ଦେହର ଲହଡ଼—ଲାଲ ଟହଟହ ଲହୁର ସୁଅ । ଉସ୍‌ମାନର ଗୋଡ଼ ବେକ ହୋଇଗଲା । ସେ ସେଠି ପୁଣି ଅଟକିଲା ।

ଆଉ ଜଣେ କଏ ଭିଡ଼ ଭିଡ଼ ଆଣୁଥିଲା ପୁଣି ଗୋଟିଏ ସୁନ୍ଦରୀ ଝିଅକୁ । ବଳଲରେ ସେ ରଡ଼ି ଛାଡୁଥାଏ, "ମରିଗଲି—ମରିଗଲି । ମତେ ଛାଡ଼ିଦିଅ—ଛାଡିଦିଅ ମୋତେ···ଛାଡ଼ିଦିଅ ।" ଲୋକଟା ଖେଁ ଖେଁ ହୋଇ ହସି ଉଠୁଥାଏ । ଉସ୍‌ମାନ ଆଉ ସମ୍ଭାଳି ପାରିଲା ନାହିଁ । ବଡ଼ ଜୋରରେ ପାଟିକଲା, "ମାରନା, ମାରନା ତାକୁ । ଛାଡ଼ି ଦେ—ଆରେ ଛାଡ଼ି ଦେ । ଛାଡ଼ିବୁ ନା ତାକୁ ? ଅଲବତ୍ ଛାଡ଼ିବୁ ।" ଲୋକଟା ମୁହଁ ଟେକି ଚାହିଁଲା । ଆଗରେ ତାର ଉସ୍‌ମାନ—ଯମ ଉସ୍‌ମାନ । ଥରି ଥରି ସେ କୁଆଡ଼େ ପଳାଇଗଲା । ରଡ଼ି ଛାଡ଼ି ଯୁବତୀଟି ତଳେ କଚ୍ରଡ଼ି ହୋଇ ପଡ଼ିଲା । ଉସ୍‌ମାନ ଧାଇଁଗଲା ତା ପାଖକୁ । ତଳେ ବସିପଡ଼ି ମୁଣ୍ଡଟାକୁ ତାର ଦ'ହାତରେ ଟେକି ଧରିଲା । ଝିଅଟିର ମୁହଁକୁ ସେ ଚାହିଁ ରହିଲା । ତାର କାନ ଫୁଙ୍କିଲା—କାନି ହଲାଇ ପବନ ଦେଲା । ଝିଅଟି ଆଖିବୁଜି ଡାକିଲା "ବାପା···ବାପା···।" ଗୁଣ୍ଡା ଉସମାନର ଛାତି କମ୍ପି ଉଠିଲା । ପବନ ଦେଉଁ ଦେଉଁ ସେ ହୁ

ମ.ରିଲ୍, ଝିଅଟି ଆଖି ମେଲି ତା ମୁହଁକୁ ଚାହିଁଲା । ସାଙ୍ଗେ ସାଙ୍ଗେ ପୁଣି କଳକଳା ରଙ୍ଗ ଗ୍ଲାଡ଼ ଆଖି ବୁଜିଲା । ସେ ପୁଣି ଥରେ ଝିଅଟିର ମୁହଁଆଡ଼େ ଚାହିଁଲା । ସୁନ୍ଦର, ଚିକ୍କଣ ମୁହଁ—କୁଞ୍ଚୁକୁଞ୍ଚୁଆ ବାଳ—ଲମ୍ବା ଲମ୍ବା ମୁଦିଲା ଆଖି, ଉସ୍‌ମାନ ତାକୁ ହଲାଇ ଦେଇ ହଠାତ୍ ଡ଼ାକିଲା, "ମା···ମା ।" କିନ୍ତୁ ଜବାବ ଦେଲା ନାହିଁ ଝିଅଟି । ହଠାତ୍ ତାର ହେଲକାକର । ଉସ୍‌ମାନର ଆଖି ଆଗରେ ହଠାତ୍ କୋଡ଼ିଏ ବର୍ଷ ତଳର କଥା ନାଚି ଉଠିଲା । ତାର ବି ଥିଲା ଗୋଟିଏ ଝିଅ—ଠିକ୍ ଏମିତି ତା ଏପରି ସେ ହୋଇ ଯାଆନ୍ତାଣି ଅବିକଳ ଏଇପରି ! ! ନା ନା, ଏଇ ତ ତାର ଝିଅ—ଠିକ୍ ଏଇ, ଏଇ କଳା କଳା ଆଖି, ବଙ୍କା ବଙ୍କା ବାଳ. ହସ ହସ ଓଠ, ସୁନ୍ଦର ଚିକ୍କଣ ମୁହଁ । ଏଇ—ହଁ ଏଇ ତାର ଝିଅ ।

ନା ନା, ସେ ଝିଅ ତାର କେତେ ଦିନୁ ରୋଗରେ ପଡ଼ି ମରି-ଯାଇଛି । ତା ପଛେ ପଛେ ବି ମା ତାର ମରିଛି । ସେହିଁଦିନଠୁଁ ଉସ୍‌ମାନ ହୋଇଛି ଝଡ଼ଝଞ୍ଜାର ସାଥି; ଆକାଶ ତଳର ଜୀବ—ପୃଥ୍ୱୀ ଉପର ମଣିଷ । ସେ ହୋଇଛି ଗୁଣ୍ଡା, ମଦୁଆ, ଡକାୟତି । ସେହିଦିନଠୁଁ—ହଁ ସେଇ ଦିନଠୁଁ । ଆଉ ଆଜି ଏଇ ଦେଖୁଁ ଝିଅ ସେ ବି ନାହିଁ । ମରିଗଲା···ଉଃ ମରିଗଲା ! ! ! ଗୁଣ୍ଡା ଉସ୍‌ମାନର ଛାତି ଭିତରଟା ଚିକିଟି ମକ୍ଚି ହେଲା, ସେ ଝିଅଟିର ମୁହଁକୁ ଚାହିଁ ହସି ଉଠିଲା—ଛାତି ଫଟାଇ ହସ ଉଚ୍ଛୁଳି ଆସିଲା ହାଃ···ହାଃ··· ହାଃ··· । ଉସ୍‌ମାନ ଝିଅଟିକୁ ହଲାଇ ଦୋହଲାଇ ପୁଣି ଡ଼ାକିଲା, "ମା···ମା !" ପୁଣି ହସିଲା ହାଃ···ହାଃ···ହାଃ···ହାଃ··· । ସେଇଦିନଠୁଁ ପାଗଳା ଉସ୍‌ମାନ ଏମିତି ହସୁଛି ।

× × × ×

କଳା କଟି କଟି ଅନ୍ଧାର ଗର୍ଭରେ ଆକାଶକୁ ଚାହିଁ ଉସ୍‌ମାନ ଭାବି ଚାଲିଥିଲା ସେଇ ଗୋଳମାଳିଆ ଦିନଟାର ଅସରା, ଅଭୁଲା କଥା । ଆକାଶରେ ମିଞ୍ଜି ମିଞ୍ଜି ତାରା,— ସୁଲୁସୁଲିଆ ପବନ । ଆଉ ସେଇ ପବନରେ ଯେପରି ବହି ଆସୁଥିଲା ଗୋଟାଏ କରୁଣ ବିଳାପର ଧ୍ୱନି । ଉସ୍‌ମାନ କାନ ଡେରି ଚାରିଆଡ଼େ ଟିକିଏ ନଜର ପକାଇ ଦେଲା । ଶବ୍ଦଟା ସ୍ପଷ୍ଟ ହେଲା । ଭାସି ଆସିଲା ଖୁବ୍ କରୁଣ ଖୁବ୍ ମର୍ମସ୍ପର୍ଶୀ କେଇପଦ କଥା—"ଉଃ. ପାଣି, ଟୋପାଏ ପାଣି ।" ପାଗଳ ଉସ୍‌ମାନ ଚାରିଆଡ଼କୁ ଅନାଇଁ ଦଉଡ଼ିଲା ।

ଗୋଟାଏ ଆଲୁଅ ଖୁଣ୍ଟତଳେ ଚଉଦ ପନ୍ଦର ବର୍ଷର ଝିଅଟିଏ । ଗୋଡ଼ହାତ ବାଡେ଼ଇ ଛଟପଟ ହେଉଛି । ଦେହ ମୁଣ୍ଡରୁ ବହି ଚାଲୁଛି ରକ୍ତ —ଧାର ଧାର ରକ୍ତ । ବିଜୁଳିବତୀର ଫିକା ଆଲୁଅ ମୁହଁରେ ତାର ପଡ଼ୁଛି । ଉସ୍‌ମାନ ବଡ଼ ବଡ଼ ଆଖିରେ ସେଇଆଡ଼େ ଚାହିଁଲା । "ପାଣି···ଟୋପାଏ ପାଣି···" ଝିଅଟି ଓଠ କାମୁଡ଼ି କାମୁଡ଼ି ପୁଣି ଥରେ ଡାକିଲା । ଉସ୍‌ମାନ ପୁଣି ଦଉଡ଼ିଲା, ଗୋଟାଏ ଅସନା ମଇଳା ପୋଖରୀରେ କାମିଜଟା ବୁଡ଼ାଇ ଧଇଁ ସଇଁ ହୋଇ ଫେରି ଆସିଲା ।

ଝିଅଟି ମୁହଁରେ ସେ ଦେଲା ପାଣି । ଢକଢକ କରି ସେ ପାଣି ପିଇଲା । ବିକଳରେ ଡାକିଲା, "ବାପା···ବାପା···ଲୋ··· ।" ଗୁଣ୍ଡା ଉସ୍‌ମାନର ଦେହରେ ଖେଳିଲା ଶିହରଣ—ଗୁଡ ଭିତରଟା ପୁଣି ଉଠିଲା ଥରି । ଉସ୍‌ମାନ ତାର ମଥାକୁ ଟେକି କୋଳରେ ରଖିଲା, ମୁଣ୍ଡରେ ତାର କଳା, ଟାଉଁଆ, ଅସନା ହାତ ବୁଲାଇ ଆଣିଲା । ଆଖି ତାର ସୁଖିରେ ମୁଦି ହୋଇ ଆସିଲା । ଝିଅଟି ପୁଣି ଡାକିଲା, "ବାପା···ହେ ବାପା···।" ସ୍ୱରରେ, ଦାଗୀ ଉସ୍‌ମାନର ମନର ମନ-

ଚଳୁ ଭଷା ଆସିଲା, "ମାଲୋ···ମା···ଡ଼ରନା ।" ଝିଅଟି ଆଖି ଖୋଲି ତା ମୁହଁକୁ ଚାହିଁଲା । ଭଲ କରି ଡାକିଲା, "ବାପା···ବାପା ମ···।" ଉସ୍‌ମାନର ମନଗହନର ତଳେ ହସ, ଆନନ୍ଦର ଉଚ୍ଛୁଳା ଢେଉ ହାବୁକା ମାରିଲା । ରଙ୍କପରି ତାର ମଥାଟାକୁ ସେ ଗୁଡରେ ଚାପି ଧରିଲା । ତରତରରେ କହିଲା, "କଣ ଲୋ ମା ? ଡରନା—ମୁ ଅଛି ପରା ।" ଝିଅଟି ସତେ ଯେପରି ହସି ଉଠିଲା । ସେଇ ହସହସ ମୁହଁ ଆଡେ ଚାହିଁ ରହିଲା ଉସ୍‌ମାନ—ପାଗଳ, ଗୁଣ୍ଡା, ମଦୁଆ ଉସ୍‌ମାନ !!!



# କଳାବୁଢ଼ା-ଜନ୍

ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର

"ଓଃ ବାପରେ; ତାର କେଡ଼େ ମୁଣ୍ଡି, ସେ ମୁଣିରେ ଖାଲି କାନକଥା ଲୁଚି ଅଛି ! ଆଉ ସେ ମୁଣିରେ ଖାଲି ଦୁଷ୍ଟ ପିଲଙ୍କୁ ସେ ବାନ୍ଧି ରଖିଛି ।"

ସେତେବେଳେ ତୃତୀବର୍ଷର ପୁଅ ମନ୍ନୁ କହୁଥିଲା, "ଆସିବୁଟିରେ କଳାବୁଢ଼ା ଜନ୍; ତୋ ମୁଣି ଧରି ଅ‌ସିବୁଟି : ଆମର ଏଇ ଗୁଲୁକୁ ତୁ ଧରି ନେଇ ଯା ।" ପ୍ରତ୍ୟୁତ୍ତରରେ ଗୋଟିଏ ଜବରଦସ୍ତି ନେତୃତ୍ୱର ଆବେଶରେ ଗୁରୁଗମ୍ଭୀର ଗୁମ୍ଫା ଖେଳାଇ କହିଲା "ଗୋଟେ ଦୁଷ୍ଟ ବାଳକ ଅଛି । ତୁ ତାକୁ ଠିକ୍ ଏ ବନ୍ଦୀ କରି ନେଇ ଯା ।"

ଗ୍ରାମର କ୍ଷୁଦ୍ର କ୍ଷୁଦ୍ର ସୁକୁମାରମତି ବାଳକମାନଙ୍କର ସ୍ୱପ୍ରବର୍ତ୍ତିତ ସମବାୟରେ ଶାନ୍ତମତ ଏପରି ଆଲୋଚନା ହୁଏ । ଗୁଲୁ, ମନ୍ନୁ, ରଘୁ, ଲୁଲୁ, କାଳି, ମଞ୍ଜୁ, ଅରୁଣ, ଅଳକ, ଦୋଳି, ସୁଧା ଓ ମୀନୁ ପ୍ରଭୃତି ୫।୬ ବର୍ଷିଆ କୁମାରମାନଙ୍କ ମଧ୍ୟରେ ପ୍ରତିଦିନ ଏପରି ଅନେକ ଦୁର୍ବାର ଦାର୍ଶନିକ ସାହିତ୍ୟ, ଇତିହାସ, ବିଜ୍ଞାନଗତ ଆଲୋଚନା ଜମିଉଠେ । ଗୁଲୁ କେଉଁ ଦିନ ଦାର୍ଶନିକ ହୁଏ, ମନ୍ନୁ କେଉଁ ଦିନ ଅଯୋଧ୍ୟାର ଶ୍ରୀପତି ଶ୍ରୀରାମ ହୁଏ, ସୁଧା ଲକ୍ଷ୍ମଣ ହୁଏ; ଅଳକ କେବେ ନିଜକୁ ସାପୁଆକେଳା ଆସନରେ ପ୍ରତିଷ୍ଠିତ କରି ନଡ଼ିଆ ବାହୁଙ୍ଗାର

ଲମ୍ବ ଲମ୍ବ ପଡର-ସାପ ଖେଳାଏ । ଦ୍ୱୋଲ କେଉଁ ଦିନ ନଈକୂଳ ଦାଣ୍ଡାଣ ସିଂହାସନ ଉପରେ ବସି ଦୂବୁଫୁଲ ଛତ୍ର ଧାରଣ କରି ରାଜପଦବୀରେ ଅଭିଷିକ୍ତ ହୁଏ ।

ଯେଉଁ ଦିନ ଏହି କୁମାରମାନଙ୍କ ମଧ୍ୟରେ ପାର୍ଥକ୍ୟ ବିଭେଦ ସୃଷ୍ଟି ହୁଏ, ସେଦିନ ଗୋଟାଏ ସାଂଘାତିକ ଧରଣର ମହାସମର ଆରମ୍ଭ ହୁଏ । ଉଲୁର ଭୁଣ୍ଡ ବୋମାର ସ୍ଥାନ ପୂରଣ କରେ, ଅନ୍ତର ହୁଙ୍କାର ଉଡ଼ାଜାହାଜର ଗର୍ଜନ ସମ ଆହୁରି ଭୀଷଣ ହୋଇ ଉଠେ । ପୋଇକୋଳି ରସ ନାଗର ଶୋଣିତ ଧାର ଦୋଳର ଶିଶୁକମଳ ଚାପୁଲିକୁ ଠିକଏ ନଳିନୀ ଶୋଣିତରେ ରଞ୍ଜିତ କରିଦିଏ । ସେମାନଙ୍କ ମଧ୍ୟରେ ପୁଣି ସନ୍ଧି ସ୍ୱାକ୍ଷରିତ ହୁଏ ।

କିନ୍ତୁ ଏବେ କେତେ ଦିନ ହେଲା ଏଇ କୁମାରମାନଙ୍କ ମନ ପ୍ରାଣକୁ ଘେରି ଗୋଟିଏ ସ୍ୱପ୍ନ, ଗୋଟିଏ କଳ୍ପନା ଗଢ଼ି ଉଠିଛି, ଆଉ ସେହି ସ୍ୱପ୍ନର ସତ୍ତା ହେଉଛି କଲାବୁଦା-ଜନ୍ ।

ଡ଼ ଉଲୁ ଆଉ ମନୁ ଦୁଇ ଭାଇ । ସେମାନଙ୍କ କୁମାର, ଶିଶୁ ଜୀବନରେ ସନ୍ଧିକ୍ଷଣରେ ବହୁତ ବହୁତ ନୂତନ ନୂତନ ଆବିଷ୍କାର ହୁଏ । ପ୍ରତିମୂହୂର୍ତ୍ତରେ ଶିଶୁ-ଜୀବନରେ ଆବିଷ୍କାର ଜୁଟେ । କିଏ ହୁଏତ ଆବିଷ୍କାର କରେ, ଗାଈ ତାର ପିଲାକୁ ମଣିଷ ପରି ଦୁଧ ପିଆଏ । କିଏ ହୁଏତ ଆବିଷ୍କାର କରେ, ସୁନୀଳ ଅମ୍ବର-ସମୁଦ୍ରରେ ଜଳଦ-ବୋଇତରେ ଚନ୍ଦ୍ର କପରି ଭାସି ଭାସି ଚାଲିଛି, ତାର ମାଉସୀ ଘରକୁ ; କାହାର ସୁନ୍ଦର ମୁଖମଣ୍ଡଳ ଜହ୍ନମାମୁଁର ଜନ୍ମଦିନଆବିଷ୍କାର ଜନିତ ତୃପ୍ତିରେ ଦୀପ୍ତ ହୋଇଉଠେ । କାହାର ବୁକୁରେ ଆଘାତ ଉଠେ ଯେ, ସେ ଆବିଷ୍କାର କରିଛି, ତାଙ୍କ ବଗିଚାର ଗଛପତ୍ର ସବୁ ପବନରେ ତାର ଜ୍ୟେଷ୍ଠ ଭଉଣୀ ପରି ଦୋଳି ଖେଳନ୍ତି । ଫୁଲର ଫୁଟିବାରେ କିଏ ଆବିଷ୍କାର କରେ, ଅନ୍ଧକାର ରାତିରେ ମାଦ୍ଧାପୁରୀର

ଅସୁରୁଣୀ ବୁଢ଼ୀର ଐନ୍ଦ୍ରଜାଲିକ ମାୟା । କେଉଁ କୁଆ ହୁଏତ ଫୁଲଗଛରୁ ପ୍ରଜାପତିଟାଏ ବନ୍ଦୀକରି ଗୋଟିଏ ନୂତନ ଅଦ୍ଭୁତ ମ୍ୟାଜିକ ଦେଖାଏ । କିଏ ହୁଏତ କ୍ଷୁଦ୍ର କଙ୍କି ଶିକାରରେ ଜନ୍ମମୁହୂର୍ତ୍ତର ଅସରନ୍ତି କୁହୁକ ଦ୍ୱାର ଖୋଲି ବସି ଖେଳି ନିର୍ବୋଧ ସରଳ ଏବଂ ନିଷ୍କପଟ ହସ ହସେ ।

ଏହି ହେଲା ଉଲୁ ଆଉ ମନୁ ବୟସର ଶିଶୁମାନଙ୍କର ବୀରତ୍ୱପୂର୍ଣ୍ଣ କ୍ରିୟାକଳାପ—ମାଟି ପିଣ୍ଡିଟା ଯଦି ଉଲୁର ଘରତର ବୀର ଗଜପତି ଜାତିର ବୀର ପ୍ରତାପ ସିଂହର ଅଶ୍ୱ ହୁଏ, ତେବେ ରାସ୍ତାର ଧୂଳି ମାଟିର ଖପରା, କି ଗୋଡ଼ି, ମନୁର ହୁଏ ରାମାୟଣ ଯୁଗର ବୀର ହନୁମାନର ଅମୋଘ ଅସ୍ତ୍ର । ଉଲୁ ଯଦି କଆଗଛ ମୂଳ ଉଇହୁଙ୍କାରେ ସିନ୍ଦୂର ଫୁଲ ଲଦି ଭଗବାନଙ୍କର ଭକ୍ତ ସାଜେ ତେବେ ମନୁ ସଙ୍ଗେ ସଙ୍ଗେ ଗୋଟିଏ ଗୃହକୁଣ୍ଡା ଗୁଡ଼ଧରି ଶତାବ୍ଦୀର ଅନୁଭୂତିଭରା ସିଦ୍ଧ, ଜ୍ଞାନବୃଦ୍ଧ ଗୁରୁ ସଦୃଶ ଗୋଟାଏ ଆବେଶରେ ତାର କଳା କଳା ଆଖି ଦୁଇଟାକୁ ଟିକିଏ କୃତ୍ରିମ କଷାୟିତ କରିବାର ଚେଷ୍ଟାରେ ଗମ୍ଭୀର ହୋଇ ଠିଆ ହୁଏ !

ଏହି ଉଲୁ ଆଉ ମନୁ ଦୁଇଭାଇଙ୍କ ମଧ୍ୟରେ ଏବେ କଳାବୁଦା-ଜନ୍‌କୁ କେନ୍ଦ୍ର କରି ଗୋଟିଏ ପ୍ରତିକ୍ରିୟା ଦେଖାଦେଇଛି । ସେମାନେ 'କଳାବୁଦା' ପୋଷ୍ଟମ୍ୟାନଙ୍କୁ କଳାବୁଦା ଜନ୍ ଏବଂ ତାଙ୍କ ଗ୍ରାମ ପୋଷ୍ଟମ୍ୟାନଙ୍କୁ 'ଆମ ଗାଁର ଜନ୍' ରୂପରେ ଗ୍ରହଣ କରିନେଇଛନ୍ତି ।

ଶିଶୁର ସରଳ ତରଳ ମନ ବସ୍ତୁର ବସ୍ତୁତା ଉପରେ, ବ୍ୟକ୍ତିର ବ୍ୟକ୍ତିତ୍ୱ ଉପରେ, କି ଜିନିଷର ସତ୍ୟତା ଉପରେ ଯୁକ୍ତି କରି ନ ଥାଏ । ଯେଉଁ ବସ୍ତୁ ଯେମିତି ଆସେ, ଯେଉଁ ପଦାର୍ଥ ଯେମିତି ଆଖି ଆଗରେ ଆବିର୍ଭୂତ ହୁଏ, ସେହି ବସ୍ତୁ ଓ ସେହି ପଦାର୍ଥକୁ ସେମାନେ ସେହି ରୂପରେ ଗ୍ରହଣ କରନ୍ତି, ସମ୍ବର୍ଦ୍ଧନା

ଓ ସମ୍ମାନ କରନ୍ତି—ବସ୍ତୁର ଉପଲବ୍ଧି ମନୁର ନୈସର୍ଗିକ ଅନ୍ତର ପ୍ରତିଭା କାଉଁରିର ଖେଳା—

ବସନ୍ତପୁର ଗ୍ରାମର ସବ୍‌ପୋଷ୍ଟ ଅଫିସ—ଏହାରି ଅଧୀନରେ, ଏକାଧିକ ଶାଖା ପୋଷ୍ଟ ଅଫିସ ଅନ୍ତର୍ଭୁକ୍ତ ହୋଇଥାଏ । ତେଣୁ ପ୍ରତିଦିନ ମଧ୍ୟାହ୍ନ ବାରଟା ବେଳକୁ ଏହି ସବ୍ ଅଫିସ ବାରଣ୍ଡାରେ ଅନେକ ପୋଷ୍ଟମ୍ୟାନ ନିଜ ନିଜର ଶାଖା-ପୋଷ୍ଟ ଅଫିସର ଡାକ ନେଇ ଆସି ହାଜର ହୁଅନ୍ତି । ଡାକ ହାଜର କରାଇ ପୁଣି ଡାକବ୍ୟାଗ୍ ଅଫିସରୁ ଗ୍ରହଣ କରି ନିଜ ନିଜ କର୍ତ୍ତବ୍ୟ ପଥରେ ଗୃଲନ୍ତି । ପ୍ରାୟ ଗୃରି ଛଅ ଦଶ "ରନର୍" । କିଏ ନଈ ସେପାରି ଗାଁ ପୋଷ୍ଟ ଅଫିସରେ କାମ କରେ । କିଏ କଳାଚୁଡ଼ା ପୋଷ୍ଟ ଅଫିସରେ କାର୍ଯ୍ୟ କରେ । କିଏ ଶଂଖେଶ୍ୱର ଗ୍ରାମ ପୋଷ୍ଟ ଅଫିସରେ କାର୍ଯ୍ୟ କରେ । କିନ୍ତୁ ସମସ୍ତଙ୍କର ସେହି ଏକା କାମ—ଚିଠି ବ୍ୟାଗ ନେଇ ହାଜର କରିବା, ପୁଣି ଚିଠି ବ୍ୟାଗ୍ ନେଇ ନିଜ ନିଜର ପୋଷ୍ଟ ଅଫିସକୁ ଫେରିଯିବା ଏହି ବିଭାଗରେ କାର୍ଯ୍ୟ କରି କରି କାହାର ଶିର କେଶଗୁଚ୍ଛ ଶ୍ୱେତ ଧରି ଆସିଲଣି, କାହାର ଶିର ନଇଁ ପଡ଼ିଲଣି, କାହାର ପିଠି କୁଜା ହୋଇଗଲଣି, କାହାର ପାଦ ଜଖମ ହୋଇ ଗଲଣି । ବନମାଳୀ ରନର୍‌ର ଏ ବିଭାଗରେ ଖୁବ୍ ଅଭିଜ୍ଞତା । ବାସୁଦେବ ମହାପାତ୍ର ରନର୍‌ର ଏ ବିଭାଗରେ ନୂଆ ପ୍ରବେଶ ହେଲେ କ'ଣ ହେବ, ଅଳ୍ପଦିନ ମଧ୍ୟରେ ତାର ଖୁବ୍ ନାମ ହାସଲ ହୋଇ ପାରିଛି । ଆଷାଢ଼ ମଧ୍ୟାହ୍ନର ମେଘଳ ମୁହୂର୍ତ୍ତର ବଜ୍ରଧ୍ୱନି, ବନ୍ୟା ବହୁଳ ତଟୋପ୍ଳାବୀ ଗର୍ଜନ; ଶୀତ ଦିବସର କୁହୁଡ଼ିଘେରା ମ୍ଳାନିମା ଏବଂ ଘନଘୋର ଶୀତ, ନିଦାଘର ଚଣ୍ଡ ତାପ—ଏ ସମସ୍ତ ମଧ୍ୟରେ ରନର୍‌ମାନେ ବସନ୍ତପୁର ସବ୍ ଅଫିସରେ ହାଜିରା ଦିଅନ୍ତି । ଘର ବୁଡ଼ ପାଣି ଆଣ୍ଠୁଏ ହୋଇଥାଉ, ଘରେ ବାଧକ ପଡ଼ିଥାଉ, କିନ୍ତୁ

ଡାକକାମ କରିବାକୁ ହେବ । ପ୍ରତିଦିନ ଥରେ ବସନ୍ତପୁର ସବ୍-ଅଫିସ ବାରଣ୍ଡାରେ ଶିର ନୁଆଇଁ ପୋଷ୍ଟମାଷ୍ଟର ବାବୁଙ୍କୁ ନିଜର କର୍ତ୍ତବ୍ୟ ହାଜର ଜଣାଇବାକୁ ହେବ ।

ଆଉ ବସନ୍ତପୁର ସବ୍ ଅଫିସରେ ଯେଉଁ ରନର ଥାଏ, ତାର ନାମ ହେଉଛି—'ଜନ୍ ମଲିକ' ।

ବସନ୍ତପୁର ଗ୍ରାମର ସେହି ଆମ୍ବ ତୋଟା, ସେହି ଗ୍ରାମ ବୁକୁ ଚିରି ଲମ୍ବି ଯାଇଥିବା ରାସ୍ତା—ସେହି ଚୂନମଣ୍ଡପ ଚତ୍ୱର, ସେହି କଳା ନୀଳ ଜଳର ତେଉଚଞ୍ଚଳ ଦୀଘି, ସେହି ନଈକୂଳ—ଏ ସମସ୍ତ ପାର ହୋଇ ରନର୍‌ମାନେ ପ୍ରତିଦିନ ଯିବା ଆସିବା କରନ୍ତି । ଆଉ ବସନ୍ତପୁର ଗ୍ରାମର କେତୋଟି କୋମଳମତି ଶିଶୁଙ୍କର ଦୃଷ୍ଟି-ପଥରେ ସେମାନଙ୍କର କ୍ରୀଡ଼ା ଅବସରରେ ହେଉ, କି ସ୍କୁଲ ଯିବା ଅବସରରେ ହେଉ, ଏହି ରନର୍‌ମାନଙ୍କର ଯିବା ଆସିବା ପ୍ରତ୍ୟକ୍ଷୀଭୂତ ହୁଏ ।

ବସନ୍ତପୁର ଗ୍ରାମର ବଡ଼ବଡ଼ ଆବିଷ୍କାରମାନଙ୍କ ମଧ୍ୟରୁ ପ୍ରଥମେ ଡଲୁ ଆଉ ମନୁ ଏହି କଳାବୁଦା ରନରକୁ ସେମାନଙ୍କର ପାଠ ପଢ଼ିଯିବା, ଗୀତ ଗାଇବା, ଆମ୍ବଗଛକୁ ଟେକା ଫୋପାଡ଼ିବା ବଣି ଚଢ଼େଇ ଧରିବା, ବେଙ୍ଗ ଶିକାର କରିବା, ଫୁଲ ଗଛରେ ଚଢିବା, କୋଳି ଗୋଟେଇବା ଏବଂ ସେମାନଙ୍କର ପରିବେଷ୍ଟନୀର ପଦାର୍ଥମାନଙ୍କ ଉପରେ ଦାର୍ଶନିକ ପରି ଚିନ୍ତା କରିବା ମଧ୍ୟରେ ଦିନେ ହଠାତ୍ ଆବିଷ୍କାର କଲେ ।

'କଳାବୁଦା' ପୋଷ୍ଟଅଫିସ ରନର ତାର ଝୁମୁକ ବାଡ଼ି ଧରି, କାନ୍ଧରେ ଚିଠିବ୍ୟାଗ ପକାଇ ଧାଇଁଥିଲା, କାଲେ ବେଳ ଫିଟିଯିବ, ଡାକ ବନ୍ଦ ହୋଇଯିବ । ଏତିକିବେଳେ ମନୁ ଆଉ ଡଲୁ ଦୋକାନରୁ ସଉଦା କିଣି ଫେରୁଥିଲେ । ମନୁ ଦୋକାନଦାରଠାରୁ ଗୁଡ଼ ଟିକିଏ

ଉତ୍କୋଚ ପାଇବା ପାଇଁ ପଡ୍ଡେଇ ରହି ଯାଇଥିଲ, ଆଉ ଏତକି ବେଳେ ଉଲୁ "ମନୁ ଧାଇଁ ଆ, ବୋଉ ଘରେ ପିଠା ଦେବ" ମର୍ମରେ ଲୋଭ ଦେଖାଇ ବିଫଳ ହୋଇ ରାସ୍ତା ଉପରେ ବଡ଼ ଭାଇର ଶାସନ କାର୍ଯ୍ୟ କରିବା ଅବସ୍ଥାରେ ମନୁକୁ ସାବଧାନ କରାଇ ଦେଲ—"ମନୁ, ହେଇଟି କଳାବୁଢ଼ା ଜନ୍ ଆସୁଛି ।"

କ୍ରମେ 'କଳାବୁଢ଼ା ଜନ'ର ପରିଚୟ ଉଲୁ ଆଉ ମନୁଠାରେ ଆବଦ୍ଧ ନ ରହି ଗ୍ରାମର ଅନ୍ୟ ସକଳ କୁମାରଙ୍କ ମଧ୍ୟରେ ପ୍ରସାର ଲଭ କଲ । କଳାବୁଢ଼ା ଜନ୍‌ର ମୁଣ୍ଡି, ଝୁମ୍ପକ ବାଡ଼ି ଆଉ ବସନ୍ତପୁର ଜନ୍‌ର ଖାକି ପଗଡ଼ି ସୁକୁମାରମତି କୋମଳ ଶିଶୁମାନଙ୍କ ଆଗରେ ସୃଷ୍ଟି କଲ ଏକ ଐନ୍ଦ୍ରଜାଲିକ ମାୟା । ଉଲୁ କହେ ଆମ ଗାଁ ଜନ୍ ଭାରି ବଡ଼ ।" ଅନ୍ୟ କହେ; କଳାବୁଢ଼ା ଜନର ଏତକି ଗୋଟେ ଠେଙ୍ଗା ଅଛି" ଆଉ କିଏ ସଭାରେ ବକ୍ତୃତା ଦେଲଭଳି କହୁଉଠେ "ମୁଁ ପରା ଦେଖିଛି, କଳାବୁଢ଼ା ଜନର ମୁଣ୍ଡିରେ ଖାଲି ଅସୁରୁଣୀ ବୁଢ଼ୀର ଦାନ୍ତ ଅଛି । ଆଉ ସେହି ମୁଣ୍ଡିରେ ସବୁ ଦୁଷ୍ଟ ପିଲ ହାତଗୋଡ଼ ବନ୍ଧା ହୋଇ ପଡ଼ିଛନ୍ତି ।"ଆଉ କାହାରି ଧାରଣା – କଳାବୁଢ଼ା ଜନର ମୁଣ୍ଡିରେ ଗୋଟିଏ ବାଲୁଆ ପିଲ ଅଛି ।" ଆଉ କାର ନିର୍ମଳ ଧାରଣା –"କଳାବୁଢ଼ା ଜନର ମୁଣ୍ଡିରେ ଛୁରୀ ଅଛି ।"

କଳାବୁଢ଼ା ଜନର ତଥା ତାଙ୍କ ଜନରମାନଙ୍କ ମୁଣ୍ଡିରେ ଭରି ରହିଥିବା କୁହୁକ ଏହିପରି ଅନେକ ଦିନପାଇଁ ନିଭୃତରେ ଏହି ଉଲୁ ଆଉ ମନୁର ହୃଦୟରେ ଗୋଟାଏ କୌତୂହଳ ଏବଂ ସରଳ ବିଶ୍ୱାସ ସଂଜୀବିତ କରି ରଖିଥିଲ ।

ଜନର ନିଜ କାର୍ଯ୍ୟରେ ବ୍ୟସ୍ତ । ପୋଷ୍ଟମ୍ୟାନ ତାର କର୍ତ୍ତବ୍ୟରେ ବ୍ୟସ୍ତ । କଳାବୁଢ଼ା ଜନ୍ ଶଠି ବ୍ୟାଗ ସହିତ ସମନ୍ୱୟ

ରଖି ନିଜ ବାଟରେ ଚାଲୁଛନ୍ତି, ଆଉ ଡୁଲୁ ଆଉ ମନୁ ସେପରି ମଧ୍ୟ କଳାବୁଦା ଜନ୍—ଜନ୍ ମଲିକଙ୍କୁ ଅନ୍ତରରେ କମୂତ ଆକାରରେ ବଞ୍ଚାଇ ରଖି ହସି ଖେଳି ଅନନ୍ତ କାଳଗର୍ଭରେ ଘୂରୁଅଛନ୍ତି ।

କଳାବୁଦା ଜନ୍‌ର ବସନ୍ତପୁର ଅଫିସକୁ ବଦଳି ହେଲା, ଆଉ ଜନ୍ ମଲିକ ଦୀର୍ଘ ୩୦ ବର୍ଷ ପରେ ଚାକିରିରୁ ଅବ୍ୟାହତି ପାଇଲା ।

ଏଣିକି 'କଳାବୁଦା ଜନ୍' 'ବସନ୍ତପୁର ଜନ୍'ରେ ଆଖ୍ୟାୟିତ ହେଲା ।

ଡୁଲୁ ଆଉ ମନୁ କଥାବାର୍ତ୍ତା ହୁଅନ୍ତି, "କିରେ, ଏ ଜନ୍ କ'ଣ ଆମ ଗାଁକୁ ଆସିଲଣି ।" ସମସ୍ତର ସାନ୍ନିଧ୍ୟ ଏବଂ ପ୍ରତିଦିନ ଦୁଇ ଚାରିଥର କଳାବୁଦା ଜନ୍ ସହିତ ସାକ୍ଷାତ କ୍ରମେ ଡୁଲୁ ଆଉ ମନୁକୁ ଜନ୍ ପ୍ରତି ଆକୃଷ୍ଟ କରାଇ ନେଲା । ଡୁଲୁ ଯେମିତି 'ଜନ୍'କୁ ଦେଖେ ଧାଇଁଯାଏ । କଳାବୁଦା ଜନ୍ କାରଣ ବୁଝିପାରିବା ଅକ୍ଷମତାରେ ଆହୁରି ଡୁଲୁ ଓ ମନୁକୁ ଚାହିଁ ରହେ । କି ସୁନ୍ଦର ଶିଶୁ ଦୁଇଟି !

ଡୁଲୁ ଆଉ ମନୁର ତୃଷ୍ଣା ପ୍ରବାସୀ ପିତା କଳାବୁଦା ଜନ୍‌ର ପ୍ରାଣରେ ବହୁଦୂରରେ ତ୍ୟକ୍ତ ନିଜର ପୁଅ ଝିଅମାନଙ୍କ ପାଇଁ ମମତା-ହୁତାଶନ ଜାଳିଦିଏ । ଜନ୍ ଯେ ଡୁଲୁ ଓ ମନୁ ପରି ଠିକ୍ ଦୁଇ ଚାରୋଟି ଶିଶୁଙ୍କୁ ଗ୍ରାମରେ ଛାଡ଼ି ଆସିଛି, ଆଉ ସେମାନଙ୍କ ଚିନ୍ତାରେ କଳାବୁଦା ଜନ୍ ଅହରହ ବାତ୍ସଲ୍ୟ-ଅଶ୍ରୁ ବିସର୍ଜନ କରୁଅଛି, ଏ କଥା ଡୁଲୁ ଆଉ ମନୁ ବୁଝି ନ ପାରି "କଳାବୁଦା ଜନ୍ ଆସିଲା ବୋଲି" ଧାଇଁଯାନ୍ତି ।

କଳାବୁଦା ଜନ୍ ଡୁଲୁକୁ କେତେବେଳେ ନିର୍ଜନରେ କେଉଁଠାରେ ଦେଖିଲେ କହେ, "ଏ ପିଲା, ଆମ ଘରକୁ ଯିବୁ ।" ଡୁଲୁ କିନ୍ତୁ କେବଳ ଭାବୁଥାଏ, କହିବ—"ତୋର ମୁଣିରେ କ'ଣ

ରଖିଛୁ, ତୋର ଛୁଟି କାହିଁ ?” ମାତ୍ର ଉଲୁ ସାହସ ସଂଗ୍ରହ କରିପାରେ ନାହିଁ । ସେ ଧାଇଁଯାଏ ।

ଯେଉଁ ବଳାବୁଦା ଜନ୍‌ର ମୁଣିରେ ଶତ ଶତ ବାତ୍ସଲ୍ୟର ପତ୍ର, ପ୍ରଣୟୀ, ପ୍ରଣୟିନୀର ପତ୍ର, ବନ୍ଧୁ ବାନ୍ଧବର କୁଶଳ ସମାଚାର ଶୁଭ ଖବର, ଅଶୁଭ ଖବର ଭରି ରହିଥାଏ, ସେହି ମୁଣିରେ ଶାଣିତ ଛୁରିକାର ଅସ୍ତିତ୍ୱ କେବଳ ଉଲୁ ପରି ନିରୀହ, ନିର୍ମଳ, ପବିତ୍ର ପ୍ରାଣ ସ୍ୱୀକାର କରିଥାଏ ସିନା।

ଶୀତର ଗୋଟିଏ ନିରାନନ୍ଦ କୁହେଳିଭରା ସନ୍ଧ୍ୟା । ଉଲୁ ଆଉ ମନୁ କ’ଣ ଦିଟା ଖାଇଦେଇ ଶୋଇ ପଡ଼ିଲେଣି । ତୁଳସୀ ଚଉରାମୂଳ ସନ୍ଧ୍ୟା ଦୀପର ଶେଷ ଶିଖା ମ୍ଳାନ ହୋଇ ପଡ଼ିଲାଣି ।

ଏତିକିବେଳେ ଦୁଆରେ କିଏ ଡାକିଲା—‘ଚିଠି ନିଅ ।’ ଉଲୁର ବଡ଼ ଭାଇ ବିଜୟ ପୋଷ୍ଟମ୍ୟାନଠାରୁ ଚିଠି ଆଣି ପଢ଼ିଲା । ବିଜୟ ଆନନ୍ଦରେ ଚିଠି ଖୋଲି ପଢ଼ିଲା, ବାପା ଲେଖିଛନ୍ତି—

କଲ୍ୟାଣୀୟ ବିଜୟ,

ତୁମମାନଙ୍କୁ ଆଶୀର୍ବାଦ କରୁଅଛି । ବୋଉ ଏବଂ ତୁମେମାନେ ସମସ୍ତେ କୁଶଳରେ ଥିବ । ମୋର ଆଶା, ବୁଢ଼ୀମା’ଙ୍କୁ ପ୍ରତିଦିନ ଔଷଧ ଖାଇବାକୁ ଦେବ । ଉଲୁ ଏବଂ ମନୁର ପଢ଼ା ପ୍ରତି ଦୃଷ୍ଟି ଦେବୁ । ଉଲୁ ଆଉ ମନୁ ପାଇଁ କଣ ନେବ, ସେମାନଙ୍କୁ ପଚାରି ଲେଖିବୁ । ମୁଁ ପ୍ରାୟ ଏକମାସ ଭିତରେ ଗ୍ରାମକୁ ଯାଉଛି । ଚଞ୍ଚଳ ପତ୍ର ଦେବୁ ।

ତୋର ବାପା

ଉଲୁ ଆଉ ମନୁକୁ ତହିଁ ଆରଦିନ ପଚାରିଗଲା, ସେମାନେ କ’ଣ ଚାହାନ୍ତି—ବାପା ଚିଠି ଦେଇଛନ୍ତି । ଉଲୁ ପଚାରିଲା—ବାପା

କେଉଁଠି ଅଛନ୍ତି ? କିଏ କହିଲା—କିଏ ଚିଠି ଦେଲା ? ଏପରି ଅନେକ ପ୍ରଶ୍ନ, ଯାହାର ସମାଧାନ ଲୋଡ଼ା ନାହିଁ ।

ତଥାପି ଡ଼ୁଲୁ ଆଉ ମନ୍ଟୁ ଗୋଟାଏ ଗୋଟାଏ ବରଫ କରିଦେଲେ—ଖାଲି ମିଠା'ଇ ଆଉ ବିସ୍କୁଟ ।

ଆଉ ଦିନେ ସେହି ପୋଷ୍ଟମ୍ୟାନ୍ ଚିଠି ଦେଇଗଲା । ଡ଼ୁଲୁ ଏଥର ତାକୁ ଦୁଆର ଉପରେ ଦେଖି ଏକବାରକେ ସ୍ତମ୍ଭୀଭୂତ ।

ଏ ଚିଠିରେ ବାର୍ତ୍ତା ଥିଲା ।

ବିଜୟ, ବୁଝିବୁ । ବଡ଼ ଦୁଃଖର କଥା, ତୋର ବୁଢ଼ୀ ଆଈଙ୍କର ଗତ ଗୁରୁବାରଦିନ ମୃତ୍ୟୁ ଘଟିଗଲା । ବୋଉକୁ ସାନ୍ତ୍ୱନା ଦେବୁ ।

ତୋର ମାମୁଁ

ସାରା ଘରେ କ୍ରନ୍ଦନର ରୋଳ । ଡ଼ୁଲୁ କିନ୍ତୁ ଅନୁସନ୍ଧାନ କରି ବୁଝିଲି, ଆଉ ମନକୁ ଚୁପ୍ ଚୁପ କରି କହୁଥିଲା—ସେହି କଳାବୁଢ଼ା ଜନ୍ ଆମ ଆଈର କାନ କାଟିଦେଲା, ଆସନ୍ତାଗୁରୁବାର ଦିନ ।"

× × × ×

ଯେଉଁଦିନ ଡ଼ୁଲୁ ବୁଝିଲା ଯେ, ବାପାଙ୍କ ଖବର 'କଳାବୁଢ଼ା ଜନ୍' ଆଣି ଦେଇଛି ସେଦିନ ସେ ଆଦୌ ବିଶ୍ୱାସ କରିପାରିଲା ନାହିଁ ଯେ, ତାର ବରଫଆ ମିଠେଇ ବିସ୍କୁଟ ଏବଂ ବାପାଙ୍କ କାନ କଳାବୁଢ଼ା ଜନ୍‌ର ମୁଣିରୁ ନିରାପଦରେ ମୁକ୍ତ ପାଇବ ।



# ଏପାରି-ସେପାରି

ଶ୍ରୀ ଚନ୍ଦ୍ରଧର ସାମଲ

— ୧ —

ପାଣି—ବଢ଼ି ପାଣି—ଖାଲି ପାଣି ସୁଅ ଛୁଟିଚି । ଆଖି ପାଉ ନାଇଁ ପାଟକୁ । ରଙ୍ଗବା ଆଖି ବୁଲେଇ ଅନେଇଁଲ୍ । କାମୁଡ଼ାଳରେ ଗଛ ନାସିଯାଏ ପାଣି ଚଢ଼ି ଗଲାଣି । ସାତ ପୁରୁଷିଆ ଅଙ୍ଖାଳ ବରଗଛଟା ପାଣି ମାଡ଼ରେ ଧୋ ଧୋ ରଡ଼ି ଛାଡ଼ୁଛି । ଅସୁମାରି ଓହଳ ଠେଙ୍ଗା ଉପରେ ଘଷିଦେଇ ସତକା ବୁଢ଼ାଟା ନିପ୍ସ୍ତର ମାଡ଼କୁ ହାହା ପଚେଇଚି । ପାଟ ଟାଣି ବଣରୁ ତକାଘର ସୁଅରେ ମାଡ଼ ହେଇ ଗଲାଣି । ଭୂଇଁ ବରକୋଳି ବୁଦାଗୁଡ଼ାକୁ ପାଣି ବୁଡ଼େଇ ଦେଲାଣି, ମଝିରେ ମଝିରେ ନିଶ୍ୱାସ ମାରିବା ପାଇଁ ଠାଏ ଠାଏ ସେଗୁଡ଼ାଙ୍କ ଡାଳ ଟେକି ଦେଉଚନ୍ତି ପାଣି ଉପରକୁ, ନିର୍ଦ୍ଦୟ ସୁଅ ପୁଣି ତାଙ୍କୁ ମାଡ଼ି ଦେଉଚି । ପାଟସାରା ଫେଣ ବଣ୍ଡାରେ ଛଇଳାମୟ ।

ପାଟ ସେପାରିକି ଆଖି ପାଉନାଇଁ — ରଙ୍ଗୀବା ଗୃହ୍ନନ୍ତି ସେ ପାରିକି । ଧୋ ଧୋ ଶବଦରେ କାନ ଅତଡ଼ା ଖସି ପଡ଼ୁଛି । ପାଟ ସେ ମୁଣ୍ଡେ ନାସୀ ମୋଡ଼ରୁ ଖରସୁଆଁ ନଈର ଫୁଲିଲା ଗୁଡ଼ତଟା ଅଳ୍ପ ଅଳ୍ପ ନଜରକୁ ଆସୁଚି ।

ପୁରୋହିତ ସାନ୍ତେ —ଏଥିରେ କି ଡଙ୍ଗା ଫିଟେ । ଦେଖୁନୁ ତ ବତାସକୁ । ନାଉରିଆ ପୁଅ, ପାଣିରେ ଘର ଆମର, ହେଲେ କଣ ହେବ ପାଣି ବଳକୁ ବଳ କାହାର; ସଖାଳ ବଖତରେ ଆଇଲ ନାଇଁ, ପାଣି ଅଣ୍ଟା ଥିଲା ଦେଖୁଚ ତ ଏଇଲେ କମିତି ଜୁଆରିଆ ଧଇଲାଣି । ଅନ୍ଧାର ରାତ ଆଉଚି ।'

ଦଳେଇଙ୍କ ପୁରୋହିତ ଲକ୍ଷ୍ମୀ ଦାଶ, ଆଉ ତାଙ୍କ ସାଥିରେ ଦୁଇଟା ପିଲା—ନଈ ପାର ହେବେ । ଆର ପାରରେ ଦଳେଇଙ୍କ ଉଆସ—ଦଳେଇଆଣୀ ପୁଅ ବୋହୂଙ୍କ ପଥକୁ ଚାହିଁ ବସିଥିବେ । ଆଜି ଚତୁର୍ଥ ଅମାବାସ୍ୟା । ନଈ ପାରି ନ ହେଲେ ନ ହୁଏ ।

'ହେ ବାପ ରଜାବା ଡଙ୍ଗା ପିଟା । ଗୁରୁଏ ହାନ ଅଛି । ସଙ୍ଗେ ସଙ୍ଗେ ଆର ପାରରେ ନାଗିପିବ ବାଘା । ମନପୂର୍ ବକ୍‌ସିସ୍ ମିଳିବ ତତେ, ଭୂରି ଭୋଜନ ମିଳିବ । ମୂଣ୍ଡି ଚୂଡ଼ା ଗୁଡ଼ଳରୁ ପାଞ୍ଚଟୋଣୀ କାନରେ ବାନ୍ଧିବୁ । ହେ ବାପା ଧୁଣ୍ଡପୁଣ୍ଡ ହଅନା ।'

ରଜାବା କଥା ଶୁଣି ନ ଶୁଣିଲା ପରି ଡଙ୍ଗା ମଝରେ କାଠ ପରି ଠିଆ ହୋଇ ରହିଲା ।

ପୁରୋହିତ ବୁଢ଼ା ସକାଳୁ ଏଇ ନଈ ଏଇ ଘାଟ ପାର ହୋଇ ଏପାରକୁ ଆସିଥିଲେ । ବେଳବୁଡ଼ ଫେରନ୍ତିକି ଏତେ ସର । କମିତ ପୁଣି ଛାର ହେବ ବୁଦ୍ଧି ହିଶୁନାହିଁ । ପିଲ ହିଟା ମାସେ ମାସେ ମଉସା ଘରେ ରହିଲେ । ସକାଳେ ସୂର୍ଯ୍ୟ ନ ଫାଟୁଣୁ ଦଳେଇଆଣୀ ପୁରୋହିତଙ୍କୁ ପେଷିଦେଲେ ମଉସା ଘରୁ ପୁଅ ବୋହୂଙ୍କି ଘେନି ଆଣିବାକୁ । ହି ପୁଅ ତାଙ୍କର ନୟନପିତୁଳା । ଅମେଇସା ଆଗହିନରୁ ନ ଫେରିବାରୁ ଦଳେଇଙ୍କି ଦୋଷ ଦେଇ ସେ ବହେ ଝିଙ୍ଗାସିଚନ୍ତି । ଆଜି ପିଲ ଘରେ ନ ପହଞ୍ଚିଲେ—ଆଉ କି ବାସ ରହିବ । ସେଥିରେ ପୁଣି ନଈ ଏଇ ଟେଳା ଗୋଟାକରେ ଯେ ଆକାର ଧଇଲଣି—ତାଙ୍କ ମନକୁ ତ କେତେ ପାପ ଛୁଉଁଥିବ ।

'ନା ସାଆନ୍ତେ, ଅକଳରେ ମୁଁ ଡଙ୍ଗା ପିଟେଇବି ନାହିଁ । ଖାଲି ହାଟ ଅଛିଲା ତ; କାତକେରଲ ତ ଠାକବ ନାହିଁ । ପାଣି ଅଧ—ଏଥିରେ ଜୁଆ.ଶିଆ ପବନ .ପିଟିଚି—ମୋର ହେମତ କୁଳଉ ନାହିଁ ।"

ପୁରୋହିତ ବୁଢ଼ାର ହାଲକା ଶୁଖିଲା ।

ଏତେ ବାଟ ଆସି କହିଲାପରେ ଦଳେଇଙ୍କ ଉଆସ ଦୁଆର-ମୁହଁରୁ କଣ ପିଲାଦିଟାଙ୍କୁ ପୁଣି ମଉସା ଘରକୁ ଫେରେଇ ନେବ ! ଆଜିପରକା ପର୍ବରେ-ମାଉସୀ ତାଙ୍କର ଝୁଆଦିଟିଙ୍କୁ ଘରୁ ଗୋଡ଼ି କଢ଼େଇ ଦଉ ନ ଥିଲା । କେତେ କଠାଳ ତକରାଳରେ ପେନି ଆସିଲା । ପୁଣି ତାଙ୍କର ଘରକୁ କଉ ଲାଜରେ ବାହୁଡ଼େଇ ନେବ ! ଏଡ଼େ ବଡ ପର୍ବାଣୀରେ ପିଲାଙ୍କୁ ଘରେ ପଇଠ ନ କଲେ ଦଳେଇ-ଆଣୀ ଶାଣି ଛୁଇଁବେ ନାହିଁ ।···ଭଗବାନ ଭରସା—ଦେ ରାଜୀବ ଡଙ୍ଗା ପିଠା । ଯା ଖୋଜିବୁ ତା ମିଳିବ । ଦଳେଇଙ୍କଠୁ ଶିରପା ମିଳିବ ।

ପୁରୋହିତେ ଜଣେ ମାନ ଗଉରବର ଲୋକ । ରାଜୀବ ତାଙ୍କ କଥା କାଟି ପାରିଲା ନାହିଁ । ତେଣିକି ଯା ଭାଗ୍ୟରେ ଥିବ ହରି ଭରସା ।

ଘାଟକୂଳେ କୂଳିଲ ବନ୍ଧା ଯାଇଛି । ଘାଟରେ କାଳ କାଳ ରାଜୀବର ବାପ ଗୋସାଁପ ଡଙ୍ଗା ବାହିଛନ୍ତି—ବର୍ଷା ଗ୍ରୀଷ୍ମମାସ—ଘାଟରେ ପାଣି ପୂରି ଯେତେବେଳେ ହୁଅ ପଡ଼େ । ରାଜୀବା ଆଜି ବାପ ଗୋସାଁପର ବେଉସା ବାହୁଛି । ବର୍ଷକ ବାରମାସରୁ ଆଠମାସ କାଳଟଣା ଆଉ ବର୍ଷା ଗ୍ରୀଷ୍ମମାସ କାତ ଭଡ଼ା । ଏଥିରୁ ପୁଣି ଭାଗୁଆଳ ଗୁରିଆ, ମଣିଆ, ରାଧୁ, ଦନା ପୁଅ ରଘୁଆ ହଂସାଏ ହଂସାଏ ପାଇବେ । ରାଜୀବା ଭୁଙ୍କାକୁ ମୁଣ୍ଡିଆଳ । ଦଳେଇଙ୍କ ବାପ ନରସିଂହ ସାମନ୍ତରାୟ ଦଳେଇଙ୍କଠାରୁ ତା ବାପ ଶିରପା ପାଇ ନାଉରୀଙ୍କର ମୁଣ୍ଡିଆଳ ହୋଇଥିଲା । ସେଥିପାଇଁ ରାଜୀବା ମନରେ ବହୁତ ବହପ । ଏଡ଼େ ବଡ଼ି ବଢାସରେ ଦଳେଇଙ୍କ ପିଲାଙ୍କୁ ପାରିକରି ଘରେ ପହଞ୍ଚାଇ ଦେଲେ ତାର ମାନ ଆଦର ବଢ଼ିବ ।

ଗଣ୍ଠା ପୁଟନେଇ ଆଗକୁ ଆସୁଛନ୍ତି । ସେତେବେଳକୁ କଥା ପଦକରେ ଦଲେଇଙ୍କ ଅମାରରୁ କରଙ୍ଗ ପାଞ୍ଚ ଦଶ ଗୌଣୀ ମିଳିବ । ଆଜି କଥା ରଖିଥିଲେ ହାକିମଭକୁ ତାଙ୍କ ଦୁଆରେ ଠିଆ ହେଲେ ଟସ ପଦେ ପଚାରିବେ । ଦିନେ ନା ଦିନେ ତା ବାପଘର ସେ ଦଲେଇଙ୍କଠୁ ଶିରପା ପାଇବ । ବାଜା ବଜେଇ ବଜେଇ ମଝି ଦାଣ୍ଡରେ ଶୋଭାଣି କରି ଚାଲିଯିବ ।

ଅଧିକ ଆତୁରୁ ପଡେ, ଫଖିଆଡ଼ାଏ, ରସ କଣ୍ଠରେ କଣ୍ଠେ ଦୋକ୍ତା ଧରି ରାଜୀବା ସାବମାଙ୍କୁ ପଚାରିଲା—'ଆଜ୍ଞେ ଘରେ ଟକେଇ ସେରେ ଚାଉଳ ଅଛି । ଆଜି ରାତିଟା ଚଳିଯିବନା ! ମୁଁ କାଲି ଭୋର ଅନ୍ଧାରୁ ଅନ୍ଧାରୁ ଦଲେଇଘାଟରୁ ଡଙ୍ଗା ସେଣ କରିବ । ଦଲେଇଙ୍କ ଦୁଆରୁ ପିଲାଙ୍କ ପାଇଁ କାନିଏ ନ ବାନ୍ଧି ମୁଁ କ ଫେରୁଚି ।'

ରାଜୀବା ଗୁରିଆକୁ ଡାକିଲା । ଆଗ ମଙ୍ଗରେ ରହିଲା ଗୁରିଆ, ପଛମଙ୍ଗ ଧଇଲା ରାଜୀବା । ଭିତରେ ବସିଲେ ପୁରୋହିତେ । ତାଙ୍କ ସାଙ୍ଗକୁ ଶଶାଙ୍କ, ଘନଶ୍ୟାମ ।

ମା ମଙ୍ଗଳାଙ୍କୁ ଡାକି ହରିବୋଲଟାଏ ଦେଇ ଡଙ୍ଗା ଛାଡ଼େଇ ଦେଲେ ଡଙ୍ଗା ମଙ୍ଗ ସୁଅ କାଟି ଚାଲିଲା ।

ଅସଂଖ୍ୟ କଳାଧଳା ଫିମ୍ପୁଡ଼ି ଭେଳା ଭସିଯାଉଚି । ଆଉ ଆଉ ପୋକ ଜୋକ, ସାପ, ବଛି ମାଳମାଳ ଭସୁଚନ୍ତି, ଗଛ ଆଶରା ଧରିଛନ୍ତି, ବହୁତ ଖୁଣ୍ଟା ମୂଳଗଛରେ ପାଣି ପିଟିହୋଇ ଶିରକାଟି ଚାଲିଚି । ମଲା ଶିଆଳ ଡ଼ୋଲ ଫୁଲେଇ ପାଣି ମଝିରେ ଭସିଯାଉଚି । ମାଳ ମାଳ ଗୁଣ୍ଡି କାଠ ଚୋର ଧରି ଛୁଟିଚି । ମଶାଣି କୋକେଇ ପାଣି ପତ୍ତନରେ ମିଶି ତାର ଅଗଣା 'ବାଟରେ ଚାଲିଚି । ଦୂରରୁ ପାଚିଲା ତାଳ, ବାଇଗି ହାଣ୍ଡି, ମଣିଷ ମୁଣ୍ଡ ଭସିଗଲା ପରି ଦିଶୁଚି ।

ପୁରୋହିତେ ହୁରକୁ ହାତଠାରି ପଚାରିଲେ—ରଜୀବା, ହେଉଛି। କଣ ଘଟିଯାଉଛି କହରେ ?

ଗୋସାଇଁ, ସେଇ। କଣ୍ଟାଝଣ୍ଟା ଭେଳାଟାଏ—ଆଉ କିଛି ନୁହେଁ।

ଡଙ୍ଗା ଚାଲିଛି। ପାଟ ପାରିହୋଇ ଖରସୁଆଁ ନଈ ତୋଣ୍ଟ ମଝିରେ ଡଙ୍ଗା ପଡ଼ିଲାଣି। ସୂର୍ଯ୍ୟ ଅସ୍ତାଚଳ କୋଳରେ ବୁଡ଼ି ଯାଉଚନ୍ତି।

—୨—

ଘମାଘୋଟ ଅନ୍ଧାର ରାତି। ଦଳେଇଘାଟ ଅଡ଼ମ୍ବର ଗଛରେ ଡ଼ଙ୍ଗା ଦଉଡ଼ି ଆଣ୍ଠୁକରି ବନ୍ଧା ହୋଇଚି। ନିଦେଇ ଟିଲୁପରି ଡଙ୍ଗାଟା ଅତଡ଼ି କୂଳକୁ ଆଉଜିଚି।

ଦଳେଇ ଘର ପିଣ୍ଡାରେ ଶୋଇଚି ରଜୀବା। ଉଲସିଆ ପବନରେ ଦେହ ଥରି ଉଠିଲା ତାର। ନିଦ ଭାଙ୍ଗିଗଲା। ଫିଟେଇ ଦେବ ସେ। ଗୁରିଆ ଅଚେତା ନିଦରେ ଶୋଇଚି। ନଈ ଡାକ ସଙ୍ଗରେ ତା'ନାକ ଡାକ ଦେଇଚି। ରଜୀବା ଖାଲି ଦେଖେ ଦେଖେ।

ଉଠିଲା ରଜୀବା। ଅତଡ଼ି ଉପରକୁ ପାଣି ଉଠି ଆସିଲାଣି। ଅତଡ଼ି ଉପର ଅଡ଼ମ୍ବର ମୂଳରେ ବଳା ଗଣ୍ଠିଏ ପାଣି ସାଇଁ ସାଇଁ ବତାସ ବାଡ଼େଇଚି। କଳା କିଟି କିଟି ରାତିରେ ତରାଗୁଡ଼ା ମିଟି ମିଟି ଚାହିଁଛନ୍ତି।

ଦେଖ ପଶିଲା ରଜୀବାର।

'ଗୁରିଆ ଉଠ ମ ଦେଖ। ନଈ ଆସି ଉଛୁଳିଲାଣି! ଉଠ୍ ଉଠ୍ ପିଲାଟୁଡ଼ାକ ଗୁଣ୍ଡ ଦେଇ ଆସିଲି—ହିନକୁ ଦାନା ରଖି ଆସି ନାହିଁ !!'

ଗୁରୁଆ ଏ ମାରି ଝାଣି ନୂଣି ଘୋଡ଼େଇ ହେଇ କର ନେଉଟେଇ ଶୋଇଲା । ଉଠିଲା ନାହିଁ । ଅଧା ଖଣ୍ଡିଆ ପିଙ୍କାଠାକୁ ଅଣ୍ଟିରୁ କାଢି ବାଜୀବା ନିଆଁ ବରିଆର ପୋଡ଼ାଗୁଳା ଭାଙ୍ଗି ଦେଇ ଫୁଙ୍କିଲା, ନିଆଁ ଲିଭି ଯାଇଛି, ବରିଆଠାକୁ ଥୋଇଦେଇ ପିଙ୍କାଠାକୁ ଡାହାଣକର କାନରେ ଖୋସିଦେଲା । ଚୂନି ଦୋନ୍ତାରୁ ଧାପେ ପାଟିରେ ପକେଇ ନଈ ସେପାରିକି ଗୃହିଁଲା ।

ସକାଳ କୁଆ ସମସ୍ତଙ୍କୁ ଡାକି ଦେଇ ଗଲାଣି । ଜଳ ଦେବତା ଅବତାରିତ । ନଈକି ଗୃହିଁ ବାଜୀବା, ଗୁରୁଆ ଦାଦାଙ୍କର ସାହସ ଉଡ଼ିଲା । ବାଡକା ବାଡ ପାଣି ଅକୂଳ । ଏଥିକି ପୁଣି ପଶ୍ଚିମାବତାସ । ଗଛ ପରି ମଉଜା ଉଠଉଚି ।

ବାଜାବା ଭାଇ, କଉ ସାହସରେ ଡଙ୍ଗା ସେଣ କରିବାକୁ କହୁଚୁ । ମୋ ଗୁଣ୍ଡି ପଡଉ ନାହିଁ । ଜାଣୁ ଜାଣୁ ପାଣିକି ଡେଇଁବା ନା ଅଝାଲ ନାହା ତ ଏଥିରେ ଠାକିବ ନାଇଁ ।

ଦଳେଇ ଘରୁ ମିଳୁଥିବା ଚୁଡ଼ା ଗୁଡ଼ଉଳ, ପିଠାତକ ଡଙ୍ଗାରେ ଥୋଇଦେଲା ବାଜୀବା । ତା ପେଟ ଘାଣ୍ଟି ହେଇ ଯାଉଚି । କୁଆଙ୍କୁ ହିନକୁ ଦାନା ଦେଇ ଆସି ନାହିଁ । ଏଥିରେ ଏ ବଢିରେ କଦମଘାଇ ବନ୍ଧ ଭାଙ୍ଗିଲେ ତା ଘଲଖଣ୍ଡି ଭାସିଯିବ । କୁଆଙ୍କୁ ଆକାର ଦିଶୁ ନ ଥିବ । ବାଜୀବା ନିଷ୍ଟପ୍ତ ଡଙ୍ଗା ଛୁଡ଼େଇବ, ଈଶ୍ବର ଅଛନ୍ତି । ତାରିଲେ ତାରିବ ମା ମଙ୍ଗଳା, ମାରିଲେ ମାରିବ ।

ଭସ୍ମରେ ଗୁରୁଆ ଡଙ୍ଗାରେ ପା ଦେଉନାହିଁ । ପାଣି ଦଳେଇଙ୍କ ପିଣ୍ଡାକୁ ଲାଗିଗଲାଣି । କାଠପର ଗୁରୁଆ ପିଣ୍ଡା ଉପରେ ଠିଆ ହେଇଛି । ଦଳେଇସାହି ପିଲାଗୁଡ଼ା ବେଗୁନିଆ ଡାଙ୍ଗ ଖେଞ୍ଜ ପୋତ ନଈ ବଡ଼ୁଚି କି ଛୁଉଚି ମାପୁଚନ୍ତି । କେହି କେହି ଗୀତ ବୋଲୁଛନ୍ତି ।

ବଡ଼ି ବଡ଼ି ନଈ ଆମ ଦୁଆରକୁ ଆ,
କାଲି ଯାଇଚ ଚଟଗାଉଁ ନାଗି ଆ ବାସି ପିଠା ଖା ।

—୩—

'ଗୁଆଁର ଘରୁଁ ପୂର୍ବ ଦି ଦିନ ହେଲା ଗଲା—ଗୃହ ଗୃହଟା ଛୁଆ, ଡ଼ାକ ଦେଇ ଗଲା ନାଇଁ !'—ସାବମା କୁଡ଼ିଆ ଦୁଆରେ ବସି ପାଟି କରୁଥାଏ; ପାଠ ସେପାରିକ ଗୃହୁଁଥାଏ କଦମଘାଇ ବନ୍ଧ ଘଙ୍ଗି ଗାଁ ଗୃହପଟେ ପାଣି ଘେରି ରହୁଚ । ତା ପଲା ଗୃହପଟେ ପହଁରୁଏ ପାଣି । ଏ ବିପତ୍ତିକି ନିଜକଥା ନିଜକୁ ଅସମାଳ—କା'କୁ ଖୋଜୁଚ କିଏ ! 'ଏ ବିପତ୍ତିରେ ମୁଁ ମନା କରୁଚ ଯା'ନା । ଦଳେଇ ଘରେ ଚଡଉ ଗିଳିବାକୁ ବାହାରି ଗଲା—ଛୁଆ ଏଣେ ଛଟପଟ ।'

ମା କଣ ଖାଇମି, କଣ ଖାଇମି, ପେଟ ଜଳିଲାଣି, କହି ସାନପୁଅ ଧଡ଼ିଆ ଚକ୍କାର କରୁଚ । ଗୃଉଳ, ଖୁଦ କୁଣ୍ଡା ଘରେ ଯାହା ଥିଲା ସବୁ ଶେଷ । ମାଣଟାଏ କୋଳଥ ସାବ ମା ସାଇତ ରଖିଥିଲା ମାଠିଆ ଭିତରେ ଗଲା ଫଗୁଣ ମାସରୁ ସେଥିକୁ ଭାଜି ଅଟା କରି ଚୂଲିରେ ବସେଇ ଦେଇଚ ।—ରାତି ଆସି ପହରେ ହେଲାଣି । ବାପଟି ମୋର, ଥିପୁ ଧର—ଜାଉ ହେଇଯାଉ ଖାଇବୁ ।' ସାବମା ଧଡ଼ିଆକୁ ଭୁଲେଇଲା । ଆଉ ତିନୋଟା ପିଲା ଜଗି ବସିଚନ୍ତି ଚୁଲି ଗୃହପାଖ । କେତେବେଳେ ଚୂଲିରୁ ଉତୁରିବ ! ନିଆଁ ଦପ୍ ଦପ୍ ଜଳି କୁଡ଼ିଆଟି ଉଷୁମ କରୁଚ । ଦୁଆର ମେଲା, ସାବମା ନଈ ପାଟକୁ ଅନେଇଚ । ନଈ, ଅନ୍ଧାର, ଖାଲି ଘୋ ଘୋ ଖଳଖଳ, ଡ଼ୋ ଡ଼ୋ ଶବଦ । ବଡ଼ିଙ୍କ ସାଙ୍ଗକୁ ଝିଙ୍କାରି ସୁର ଧରିଚନ୍ତି ।

ରାଜୀବା ଫେରି ନାଇଁ, ସାବମା ଦିନସାରା ଗୃହିଁ ଗୃହିଁ ସେ ଫେରିନାଇଁ । ଏତେ ରାତିରେ—ସେ କଣ ଆଉ ଫେରିବ—

ଅପସନ୍ଦ କଥା । ସଙ୍ଗୀବା ସବୁଦିନେ ପାଣିରେ ବୁଡ଼ି ବୁଡ଼ି ମାଛମାରି ସାତ ପହରକେ ଥରେ ଥରେ ଫେରେ । ସନ୍ଧ୍ୟାରୁ ସାବମା ପିଲାଙ୍କୁ ଖୋଇ ଶୁଆଇ ପକାଏ—ଦୁଆରବନ୍ଧକୁ ଆଉଜା ସଙ୍ଗୀବା କବାଟ ଚାହିଁ ନିତି ବସିଥାଏ । ସେଇ ଖୋଇରେ ଆଜି ସଙ୍ଗୀବା ପଥକୁ ଚାହିଁ ବସିଛି ସାବମା । କୋଳଥ ଜାଉ ଖାଇ ଛୁଆଗୁଡ଼ି ଶୋଇ ପଡ଼ିଲେଣି—ସନ୍ତସନ୍ତିଆ ଭୂଇଁ ଉପରେ ଛିଣ୍ଡାହେଁସ ବିଛେଇ । ଜଳ ଦେବତା ଆଜି ଉଦ୍‌ଗାରିଛି—ମଣିଷ ବଳ କେତେ ତାକୁ ପାରି ହୋଇ ଆସିବ !

ସାତ ପାହି ସକାଳେ ଡୋଙ୍ଗା ଖବର ବିଚ୍ଛେଇ ହୋଇଗଲା । ସଙ୍ଗୀବା ଫେରି ନାଇଁ, ନଈପାଠରେ ଗର୍ଜନ ଖାଲି ନାଳିଠା ପରିହାସ ଶୁଣଉଛି ।

ଦିନ ଦିପହରକେ ଛୁଆଗୁଡ଼ା "ଭୋକ" "ଭୋକ" ଚିତ୍କାର କଲେ । ମା' ଭୋକ, ଭୋକ !

କଣ ଖାଇବେ ଛୁଆ—ସାବମାର ମୁଣ୍ଡ ବୁଲେଇଲା । ଚୂଲାକୁ ବାଡ଼ୁକୁ, ଅଧୋଡ଼ା ପଡ଼ିଥିବା ଖାଲି ହାଣ୍ଡିକୁ, ଚୂଲି ଉପରକୁ ଚାହିଁଲା ସାବମା ।

ଅକଳନା ପାଣିସୁଅ ଚାଲିଛି । କାହାର ଦୁଃଖ ଦୁର୍ଦ୍ଦଶା, ବିପଦ ଆପଦକୁ ତାର ଖାତିର ନାଇଁ । ଖାଲି ଗର୍ଜନ, ତର୍ଜନ, ଗଛବୃକ୍ଷ ଭାଙ୍ଗି ଭସେଇ ନେଉଛି । ଚକଡ଼ା ଚକଡ଼ା ବାଲି ଭଉଁରୀ ଉଠେଇ ଉପରକୁ ଫିଙ୍ଗୁଛି ।

ନଅ ବରଷର ପୁଅ ରତନା କହିଲା—ମା ! ଖେପା ଜାଲଟି ଦେ—ହିଖେପା ପକେଇ ମୁଁ ପୋହଳା ହିଠା ଧରିଆଣେ । ପୋଡ଼ି ଦେବୁ ଖାଇମୁଁ ।

ତୋ ହାତ ଠାଣ ହେଉ ବାପ । ଛାଲ ନେଂ ନା, ପାରୁନୁ ନାଇଁ, ପାଣିରେ କଣ୍ଟାଝଣ୍ଟା ବୁଡ଼ିଚି, ସେ ଖଣ୍ଡି ଛୁଡ଼ିଯିବ ।

ପାଟପାଣି ଉପରେ ନଗ୍ନ ଖରା ଶ୍ମଶାନ ଧୂଆଁ ଖେଳଉଚି । ଚାଳ ଉପରେ ବୋଇତାଳୁ ନଚାଟାଏ ମାଡ଼ି ପବନରେ ଦୋହଲୁଚି ।

ବଡ଼ ଝିଅ ସାବି ଖିଆଲରେ ମଞ୍ଜି ଟାଏ ଜ୍ୟେଷ୍ଠ ମାସରେ ପୋତି ଦେଇଥିଲା । ସେଇ ମଞ୍ଜିର ଏ ଗଛ । ଗୋଟା ପିଡ଼ାଟିରୁ ଫାଳେ ମାଡ଼ି ବସିଚି । କେତେ ଅଣ୍ଡିରି ଫୁଲ ଫୁଟିଲଣି । ଆଜିଯାଏ ଗୋଟାଏ ବୋଲି କଷି ଧରିଲା ନାହିଁ । ଏଇ ବୋଇତାଳୁ ନଚାଟି ଆଜି ସାବମା'ର ସାହସ । ତାର ଚାରଟି ଛୁଆଙ୍କର ଭରସା । ସୁତର କରି ନଚାଟିରୁ ପତରଗୁଡ଼ାଏ ତୋଳିଲା ସେ ।

ଆହାର ! ବୋଇତାଳୁ ନଚାଟି ଛୁଆଙ୍କର ଜୀବନ ରଖିଲା ଆଜି,—ଶାଗରେ ଉଦର ପୂରଣ କରି ଅହେତୁ ପିଲାଗୁଡ଼ା ଖୁସିରେ ନାଚିଲେ । ଏଗାର ବରଷର ଝିଅ ସାବି, ମା ପାଖରେ ବସି ପଚାରିଲା—ମା ! ବାପା ଏକ୍ଷଣି କେଉଁଠି ଥିବ ?

ମା, ମଙ୍ଗଳା ଭରସା—ସାବମା ପାଟିରୁ ବାହାରି ପଡ଼ିଲା ।

ପାଞ୍ଚ ଦିନ ପରେ ବଢ଼ି କମିଚି । ନଈ ଥଳ ଦେଇଚି । ପାଟରୁ ହୁ ହୁ ପାଣି ଖସି ଯାଉଚି । ହୁଗ ହୁଗ ବୋର କୂଳରେ ଗଦା ହେଇଚି ।

ତଥାପି ରାଜୀବାର ଡଙ୍ଗା ଫେରିଲା ନାଇଁ,— ସାବମା' ଆଖିରୁ ପାଣି ମଲଣି । ରାଜୀବା ଫେରି ନାଇଁ, ଗୁରୁଆ ଫେରି ନାଇଁ, ଡଙ୍ଗା ଫେରି ନାଇଁ ।

ବନ୍ଧ ଉପରେ ବାଂବାକୁ ଚାହିଁ — ଚାରି ଚାରିଟା ଛୁଆ ଛୁଡ଼ା ହୋଇ ପାଟକୁ ଚାହିଁ କାନ୍ଦୁଚନ୍ତି ।

ପାଽପାଣି ଅଣ୍ଡା ଧରଲଣି, ନଈ ଛୁଡ଼ ଛୁଡ଼ ପେଽରେ ପଡ଼ଲଣି —ତଥାପି ରାଜୀବା ଫେରନାଇଁ—କି ଦଳେଇ ଘରର ଚୂଡ଼ା, ଗୁଡ଼ଲ, ପିଠା ବୁଜୁଲା ଛୁଆଙ୍କ ପାଖରେ ପହଞ୍ଚ ନାଇଁ ।

ସାବମା ଦୁଆରକୁ ଆଉଜ ରାଜୀବା ବାଟ୍କୁ ଅନେଇ ରହୁଛୁ । କେତେ ବଡ଼ି ଆସିଛୁ, ବଡ଼ି ଯାଉଛୁ । ଦନ ପରେ ଦନ—ରାତ ପରେ ରାତ ବତ ଗଲଣି । ତେବେ ବ ସେହୁ ଆଖି ଗୃହଁ—ରହୁଛୁ ।



# ଘର

ଶ୍ରୀ ଗୋପୀନାଥ ମହାନ୍ତି

( ୨ )

ଦକ୍ଷିଣର ରେଲଗାଡ଼ିରୁ କନିଷ୍ଠପବ ପିଲପିଲା ଓହ୍ଲାଇ ନେଇ ରାଜଧାନୀକୁ ନୂଆ ବଦଳି ହୋଇଥିବା କର୍ମଚାରୀ ସଦାଶିବ ଯେତେବେଳେ ଷ୍ଟେସନ ଫାଟକ ଟପି ପଦାକୁ ଆସିଲା, ସେତେବେଳେ ଝିଅ ମନ୍ଦାକ୍ରାନ୍ତା ଆଉଥରେ ପଚାରିଲା—"ବାପା ଆମ ଘର ?" ତାଠୁଁ ଦୁଇବର୍ଷ ସାନ ପୁଅ ଶାର୍ଦ୍ଦୁଳବିକ୍ରୀଡ଼ିତ ଉଲ୍ଲାସରେ ଷ୍ଟେସନ ଘର ଭିତରେ କୁଦା ମାରିଲା ପାଟି କରି କରି,—"ଆମ ଘର, ଆମଘର; ସାନ ପୁଅ ଅନୁଷ୍ଟୁପ ଓ ସାନ ଝିଅ ଗାୟତ୍ରୀ ଏଭଳିକରୁ ବୁଝିଲେ ଯେ ଏ ଉତ୍ସବ ପାଳିବା ଉଚିତ । ତେଣୁ ଦୁହେଁ ବେଳରେ ହାତ ଛନ୍ଦାଛନ୍ଦି ହୋଇ ଡେଇଁ ଡେଇଁ ବୁଲିଲେ ପାଟି କରି କରି—"ଆମ ଗଲି ଆମ ଗଲି ।" ପଛରେ ଆସୁଛନ୍ତି ତାଙ୍କ ମା ଦମୟନ୍ତୀ, କହିଲେ—"ପାଣି ସୋରେଇଟା କଣ ରେଲରେ ରହିଗଲା କି ?"

"ନା, ଅଛି, ଚାଲ" ସଦାଶିବ କହିଲା । ପିଲାଙ୍କୁ ଆକଟି କହିଲା "ହେଇ, ପାଟି କରନା !"

ଲୋକେ ଚାହିଁଛନ୍ତି । ଚାହିଁବାର ବି କଥା, ମାଲ ବହୁତ । "ବାବୁ, ଗାଡ଼ି ? ବାବୁ ?" କହି ଗାଡ଼ିବାଲାମାନେ ଯେତେବେଳେ ଘେରିଗଲେ ମନ୍ଦାକ୍ରାନ୍ତା ଆଉ ଥରେ ପଚାରିଲା,—"ବାପା, ଆମ ଘର ଏଠୁ କେତେ ଦୂର ?"

ସଦାଶିବ କିଛି ଜବାବ୍ ଦେଲେ ନାହିଁ । କାଗଜପତ୍ର ପଟାପଟି କରିଦେଇ ପିଲାଙ୍କୁ ଧରି ଗୋଟିଏ ଘୋଡ଼ାଗାଡ଼ିରେ ବସି ଯାତ୍ରା ଆରମ୍ଭ କରିଦେଲେ ।

ଗାଡ଼ି ଭିତରେ ସ୍ତ୍ରୀକୁ ଚାହିଁଲେ, ସେ ଆସନ୍ନ-ପ୍ରସବା । "କେମିତି ଅଛ ?"

"ଭଲ ।"

"ଆରେ ପିଲାଏ ବୋଉ ଉପରେ ମାଡ଼ି ହୁଅ ନାହିଁ ।" ଶାର୍ଦ୍ଦୂଲବିକ୍ରୀଡ଼ିତ ସ୍ଲୋଗାନ୍ ଦେଲା,—"ଆମ ଘର ।"

ସଙ୍ଗେ ସଙ୍ଗେ ସମସ୍ତେ ମିଶି ସମସ୍ୱରରେ ଚିତ୍କାର,—"ଆମ ଘର, ଆମ ଘର ।"

ଦୁ'ପାଖ ସିଟ୍‌ରୁ ସ୍ୱାମୀ ସ୍ତ୍ରୀ ମୁହଁ ଚାହାଁ ଚାହିଁ ହେଲେ, ଦମୟନ୍ତୀ ହସିଲା, ସଦାଶିବ ମୁହଁ ପୋତିଲେ ।

ବାରବର୍ଷ ପରେ ସେ ଜନ୍ମଧାମକୁ 'ବଦଳି' ହୋଇଛନ୍ତି । ମଝିରେ ବର୍ଷେ ଦୁ ବର୍ଷରେ ଥରେ ଅଧେ ନ ଆସିଛନ୍ତି ନୁହେଁ, କିନ୍ତୁ ସଂସାର ସମେତ ବଦଳି ଏଇ ପ୍ରଥମ । ଏହି ସେହି ପୁରୁଣା କଟକ ତାଙ୍କ ବାଲ୍ୟର, ଯୌବନର । ଆଉ ଏଠୁ ଚାରିକୋଶ ଦୂରରେ ନଈ ସେପାରି ସାନ ଗାଁଟିଏ, ଯେଉଁଠି ସେ ଜନ୍ମ ହୋଇଥିଲେ ।

ଜନମ ମାଟି ତୁହ ପରେ ଲଙ୍କାମରିଚ ବାଇଗଣ ଲାଗିଥିବ, ଡହବାଇଗଣ ଭଲ ଫଳୁଥିବ ।

ଆଉ ଥିବ କଳାମିଶ୍ ମିଶ୍ କଖାରୁ ଡଙ୍କ ତାର ଚେକା ଚେକା ଝାଆଁସିଆ ପତ୍ର ।

( ୨ )

କୋଠା—କୋଠା—କୋଠା ଠିଆ ହୋଇଛି, ଡଆରି ଚାଲିଛି, ଇଟା ଗଦା ହେଉଛି, ବାଲି ଗଦା ହେଉଛି । ଇଟା ବୋଝେଇ ହୋଇ

ଲୁହା ଛଡ଼ ବୋଝେଇ ହୋଇ ବିକଟ ବେଗରେ ଚାଲିଛନ୍ତି ଟ୍ରକ୍ ମାଲ ମାଲ । ମଠରେ ଚାପି ହୋଇ ମରିଗଲା ବା କିଏ,—ଏମିତି ମରି ନ ଥାନ୍ତା ସେମିତି ମରନ୍ତା,—ପ୍ରଗତି ଅଟକୁ ନାହିଁ । ଭିଁ ଭିଁ ମଠରଗାଡ଼ି, କେତେ ବଡ଼ଲୋକ ! ଉଦ୍‌ବୃଦ୍ଧ କଟକ, ସମୃଦ୍ଧ କଟକ । ଜାତି ଜାତି ଲୋକ । ଗହଳ ସହର ।

ବାରବର୍ଷ ତଳେ ଏଠୁ ଯାଇଥିଲା ସେ । ଜିଲ୍ଲା ପରେ ଜିଲ୍ଲା ବିଶାଳ ଓଡ଼ିଶା । ମନ୍ଦାକ୍ରାନ୍ତା ବାଲେଶ୍ୱରରେ ଜନ୍ମ, ଶାର୍ଦ୍ଦୂଳ-ବିକ୍ରୀଡ଼ିତ କୋରାପୁଟରେ, ଅନୁଷ୍ଟୁପ୍‌ର ଜନ୍ମଭୂମି ବୋଡ଼ାସମ୍ବର, ଗାୟତ୍ରୀ ଭଞ୍ଜଭୂମିର ଝିଅ, ଜନ୍ମ ରସଲକୁଣ୍ଡାରେ, ଆଉ ଯେଉଁଟି ଜନ୍ମ ହେବାର ଅଛି ତାର ପରିକଳ୍ପନା ସୁଦୂର ଅରଣ୍ୟାନୀ ଭିତରେ ମାଙ୍କଡ଼ନଗ୍ନ ସବଡ଼ିଭିଜନରେ—ସେ କଟକରେ ସୂର୍ଯ୍ୟ ଦେଖିବ ।

କିନ୍ତୁ କେଉଁଠି ? କାହିଁ ତା ପାଇଁ ଘର ?

"ଏ ସହର ବଡ଼ଲୋକଙ୍କର," ସଦାଶିବ ସ୍ତ୍ରୀକୁ କହିଲା, "ଆମ ପାଇଁ ଏଠି ସ୍ଥାନ ନାହିଁ ।"

"ଚାଲ ତ—" ସ୍ତ୍ରୀ କହିଲା ।

"ସମସ୍ୟାଟା କଣ ଜାଣ ?" ଦୁଃଖିତ ହୋଇ ସଦାଶିବ କହିଲା,—"ଯେଉଁ ଯୁଗରେ ଯେଉଁମାନେ ମରିଯିବା ଉଚିତ ସେମାନେ ମରନ୍ତି ନାହିଁ ।" "ଏତେ ବ୍ୟସ୍ତ ହେଲେ କଣ ହେବ କହିଲ ?" ଦମୟନ୍ତୀ ବୁଝେଇଲା, "ଘର ଖଣ୍ଡେ ମିଳି ଯିବ ନାହିଁ ଯେ—"

"ମିଳିବ ନିଶ୍ଚୟ, ଦାନ୍ତ ଚିପି ଚିପି ସଦାଶିବ କହିଲା, କିନ୍ତୁ ଡେରିଅଛି ।"

ତାର ଜଳନ୍ତା ଦୃଷ୍ଟି ଆଉ ଲମ୍ବା ଦୀର୍ଘଶ୍ୱାସ ନିଷ୍ଫଳ ରାଗରେ ଆକ୍ରମଣ କଲା ରାସ୍ତା ଧୂଳିକୁ ।

ମଟର ପଛରେ ମଟର ଚାଲୁଚି, ମଟର ଚାଲିଛି ।

( ୩ )

ଗନ୍ତବ୍ୟ ଲକ୍ଷ୍ୟ ବନ୍ଧୁ ରତ୍ନାକରର ଘର; ରତ୍ନାକର ଯୁଦ୍ଧୋତ୍ତର ବଜାରରେ ଲୁହା ବ୍ୟବସାୟ କରେ । ଅଣଓସାର ବାଟଘରକୁ ଛାଡ଼ି ଖୁବ୍ ସାନ ଗୋଟିଏ ଚୁଲଘର; ଖଟକୁ ଖଟ ଯୋଡ଼ି ତଳେ ଜିନିଷପତ୍ର ଗଦେଇ ରଖି, ଶିକାରୁ ଓହଳେଇ ବାକି ଯେତିକି ସ୍ଥାନ ଫାଙ୍କା ରହିଲା, ସେତିକିରୁ ରତ୍ନାକର ତାର ଓ ନିଜର ପିଲାମାନଙ୍କ ପାଇଁ ନିଃଶ୍ୱାସ ଗ୍ରହଣ କରେ । ପିଲା ତାର ବ ପାଞ୍ଚୋଟି ସ୍କୁଲଯାଦୀ, ସ୍ତ୍ରୀ ସେ ଓ ଚାକରବାକର । ତା ଛଡ଼ା ଘରେ କୁକୁର, ବିଲେଇ, ମୂଷା ଓ ଗାଈଟେଗାରୁ ।

ଏପରି ଅବସ୍ଥାରେ ରତ୍ନାକର ଯେ ଦୂରାଗତ ବନ୍ଧୁର ଅଭ୍ୟର୍ଥନାର ଭାର ନେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଥା, କିନ୍ତୁ ଏ ସଂସାରର ଆଶ୍ଚର୍ଯ୍ୟ ଅପ୍ରତ୍ୟାଶିତ ସମ୍ଭବ ହୋଇଥାଏ,—ଅପ୍ରତ୍ୟାଶିତ ଉଦାରତା, ଅପ୍ରତ୍ୟାଶିତ ନିଷ୍ଠୁରତା ଓ ଆକସ୍ମିକ ଘଟନା ବିଶେଷତଃ ସଦାଶିବ ସେହିପରି ଯୁକ୍ତିକରେ, କହେ ଆକସ୍ମିକତାରେ ବିଶ୍ୱାସ ନ ରଖିଲେ ଜୀବନ ରଖିବାର ପ୍ରୟୋଜନ ନାହିଁ ।

କାରଣ ନିଜର ଅବସ୍ଥା ଓ ରୋଜଗାରକୁ ଚାହିଁ ଯେଉଁ ପ୍ରକାରର ସେ ଅଙ୍କ କଷୁ ସେ ଦେଖେ ଅଙ୍କର ଫଳ କେବଳ ଅନାହାର, ଋଣ, ଇନ୍‌ସଲଭେନ୍‌ସି, ତା ପରେ ଅନ୍ଧକାର, ଯଦି ଆକସ୍ମିକ କିଛି ନ ଘଟିବ । ସେ ସଂସାରରେ ଗ୍ରୀକ୍ ଟ୍ରାଜେଡ଼ିରେ ଆସ୍ଥାବାନ୍ ।

ତେଣୁ ରତ୍ନାକର ଶଠିରେ ଅଣ୍ଟା ଭଡ଼ଥିବା,—"ରହ ମାସେ ପକ୍ଷେ, ମୋର ଆପତ୍ତି ନାହିଁ ।"

ତାର ଗେଞ୍ଜିଗାଞ୍ଜି ବସାକୁ ଲଗି ପଦାରେ ଖଣ୍ଡିଏ ଗୁଳିଆ ଥିଲା । ଯା ଠିକ୍ ସଦାଶିବଙ୍କୁହିଁ ଅପେକ୍ଷା କଲାପରି ରହିଥିଲା ।

ଝାଟିମାଟିର କାନ୍ଥ, ଉପରେ ଗୁଳି, ଝରକା ନାହିଁ, ମେଲା ମେଲା ବାଉଁଶ ଜାଲିର ଦୁଆର କବାଟ, ଭିତରେ ଲୁହାର ଯନ୍ତ୍ରପାତି କିଛି, କିଛି କାଠ ତାବଲ ଓ ଅନ୍ୟାନ୍ୟ ଅଦରକାରି ଜିନିଷ, ପିଲାଙ୍କ ବହି ଆଲମାରି ଛନୋଟି, ଯୋଡ଼ିଏ ଟେବଲ, ପାଞ୍ଚଟି ଚୌକି ।

ତଥାପି ଛନୋଟି ଖଟ ପଡ଼ି କିଛି ଖାଲି ଜାଗା, ଦୁଇକଡ଼ରେ କିଛି ଖାଲି ଭୂଇଁ ।

"ଏଇ ଘର" ସଦାଶିବ କହିଲା ।

ରତ୍ନାକର ଆଗେଇ ଆସିଲା । ପଛେ ପଛେ ତାର ସ୍ତ୍ରୀ । ଦୁଇପକ୍ଷର ପିଲା ଦୁଇ ପକ୍ଷଙ୍କୁ ଅନାଇ ରହିଲେ ।

( ୪ )

ଅନ୍ଧାର, ପ୍ରବଳ ବର୍ଷା ।

ଖଟ ଉପରେ ବିଛଣା ବିଛେଇ ସମସ୍ତେ ଶୋଇଛନ୍ତି ।

ହଠାତ୍ ସଦାଶିବର ନିଦ ଭାଙ୍ଗିଗଲା । କାହିଁକି ସେ ଜାଣେ ନାହିଁ । ପଦାକୁ ଚାହିଁଲା । ଲାଗିଲା, ଏମିତି ଜୀବନ, ପଦାରେ ଅନ୍ଧାର ଓ ମେଘ, ଶୀତରେ ପାଣିରେ ମରିବାରହିଁ କଥା, ତଥାପି ଲୋକ ମରେ ନାହିଁ—କୌଣସି ପ୍ରକାରେ ଆକସ୍ମିକ ଆଶ୍ରୟ ମିଳିଲେ ମୁଣ୍ଡଗୁଞ୍ଜି ପଡ଼ି ରହେ —

ଭଗ୍ୟପ୍ରତି କୃତଜ୍ଞତା ଜଣାଇଲା । ପୁଣି ରତ୍ନାକର ପ୍ରତି । ଚିନ୍ତାରେ ମନ ଦେଲା,—ଏହା ପରେ କଣ ? ଏହା ପରେ କଣ ?

ହାତ ଉପରେ ଗୋଟାଏ ମୂଷା ଦଉଡ଼ି ପଳେଇବାର ଅନୁଭବ କଲା, ଚମକି ଉଠିଲା । ଏ ଘରେ ମୂଷାମାନଙ୍କର ଅବାଧ ଗତି ସେ ଜାଣେ, ଆଲୁଅ ଥାଇବ ସେମାନେ ଖେଳ କସରତ୍ କରନ୍ତି, ଆତଯାତ ହୁଅନ୍ତି । ଅନ୍ଧାରରେ ଜଣାଗଲା ଘର ଭିତରେ ନାନାଜାତି ଶବ୍ଦ ଲାଗିରହିଛି । ତା ପରେ ଆରମ୍ଭ ହେଲା ଗୋଟାଏ ଖଡ଼୍‌ଖଡ଼୍ ଖଡ଼୍‌ଖଡ଼୍ ଶବ୍ଦ । ଠିକ୍ ତାର ଶୋଇବା ଖଟତଳେ, ତା ସଙ୍ଗେ ସଙ୍ଗେ ଗୋଟାଏ କଣ ଗନ୍ଧ ।

ମୁଣ୍ଡ ତକିଆ ଟେକି ଲାଇଟ୍ କାଡ଼ି ଜାଳି ଦେଖିଲା, ଖଟତଳେ ଗୋଟାଏ ବୁଢା କୁକୁର, ନାକ ଅଗଠୁ ଲାଞ୍ଜ ଅଗଯାଏ କେଉଁଠି ଗୋଟିଏ ବୋଲି ରୁମ ନାହିଁ ସବୁ ଉପୁଡ଼ି ଯାଇଛି ।

ସ୍ତ୍ରୀର ବି ଏ ଘରେ ଦଖଲ ଅଛି ।

କିନ୍ତୁ —

ମଣିଷପଣ ବିସ୍ତାର କରି ଆତିଥେୟ ତାର ପ୍ରତିଦାନ ଦେବାକୁ ଯାଇ ସଦାଶିବ କୁକୁରକୁ ମାରି ଗୋଡ଼େଇଲା । କୁକୁର ବି ବୃଦ୍ଧ-ପ୍ରତିଜ୍ଞ ସେ ଅନ୍ଧାରକୁ ବର୍ଷାକୁ ଯିବ ନାହିଁ । ଏକରୁ ସେକର ଗୋଡ଼େଇ ଯାଉ ଯାଉ ଅନେକ ପ୍ରତିବନ୍ଧକ, ଖଟ, ଆଲମାରି, ଚୌକି ଜିନିଷପତ୍ର । ଲାଗିଗଲା "ମରେ ଲୁଚି" ଖେଳ ସେପାଖୁ ଏପାଖ । କୁକୁର ପ୍ରଚୁର ଆଗ୍ରହରେ ଯୋଗଦେଲା ।

ଅଧଘଣ୍ଟାଏ ଏକର ସେକର ହୋଇ ସଦାଶିବ ବିଛଣାରେ ମୁହଁ ମାଡ଼ିଲା । କୁକୁର ବି ଆଉ କ୍ଲାନ୍ତ ହେଲା ନାହିଁ, କେବଳ ମଝିରେ ମଝିରେ ଫଁ ଫଁ ସଁ ସଁ ଦୀର୍ଘଶ୍ୱାସ, ଆଉ ତା ଦେହର ଗନ୍ଧ ଯେଉଁଥିପାଇଁ ସେ ଦାୟୀ ନୁହେଁ ଆଦୌ ।

ଜୀବନର ସାଲିସ୍ ଗ୍ରହଣ କରିନେଇ ସଦାଶିବ ବର୍ଷାର ଧ୍ୱନିକୁ କାନ ଡେରିଦେଇ କେତେବେଳେ ଶୋଇ ପଡ଼ିଲା ।

ଆରଦିନ ସକାଳ । ଅଳ୍ପ ଖର୍ଚ୍ଚ ପଡ଼ୁଛି ।

ଲାଗିଲା ଯେପରିକି ଦୁନିଆ ତାକୁ କୁମ୍ଭକର୍ଣ୍ଣ ବୋଲି ଠଉରେଇଛି ଓ ତାର ନିଦ ଭାଙ୍ଗିବାକୁ ଗୁରିଆଡୁ ପଡୁଛି କାନଫଟା ପାହାର ।

ସହରର ଭାଷାରେ ପହିଲି ସକାଳର ପ୍ରଥମ ସମ୍ବୋଧନ ଶୁଣିଲା, ଲୁହାପିଟା ଲାଗିଛି ।

ମୁଣ୍ଡ ଠେକି ଅନେଇଲା, ପଲେ ମେଣ୍ଢା ଓ ଦିଟା ବଳଦ ତାର ଖାଲି ଦୁଆରମୁହଁ ବାଟେ ପଶି ଆସୁଛନ୍ତି । ଅପେକ୍ଷା କଲା ନାହିଁ ।

( ୫ )

ଘର ଖୋଜିବାକୁ ଅଣ୍ଟା ଭିଡ଼ୁଛି ସଦାଶିବ, ପକେଟରେ ତିନୋଟି ପାନ, କଠାଏ ବିଡ଼ି ଓ ଗୋଟିଏ ଦିଆସିଲି । ସାମ୍ନାରେ ଗୋଟାଏ ରବିବାର । ଏ ଦେଶ ବ୍ୟକ୍ତିଗତ ଉଦ୍ୟମର ଦେଶ, ତେଣୁ ଏଠି ଅବସ୍ଥା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ସୁଯୋଗ ଦିଏ, ସଦାଶିବ ମନକୁ ମନ ଯୁକ୍ତିକଲା । ସାଇକଲ୍ ଧରି ଗତି କଲା ଅନିର୍ଦ୍ଦିଷ୍ଟ ଉଦ୍ୟମରେ । ରାଜଧାନୀକୁ ସେ ମନେ ମନେ ବାଣ୍ଟି ନେଲା ଗୃହଖଣ୍ଡ କରି । ଗୃହଦିନର ଯୋଜନା ।

ପାନ ଦୋକାନୀ, ଖଲିଫା, ପ୍ରଭୃତି ଗଳିରେ ସ୍ଥାନେ ସ୍ଥାନେ ଧୋବଧାଉଳିଆ କେବ୍‌ହି ବାବୁଭଲେ କେହି ଚହଲା ଲୋକ, ହୁଏତ ସମ୍ବାଦ ଦେବେ ଏମାନେ, ତା ଛଡ଼ା ରାଜକର୍ମଗୃହୀ ବନ୍ଧୁମାନେ ।

ଅନେକ ତଥ୍ୟ ସଂଗ୍ରହ କଲା, ଅନେକ ନୂଆ ଘରର ସନ୍ଧାନ ମିଳିଲା ଓ ନୂଆ ମଣିଷଙ୍କ ପରିଚୟ । ଖବର ପାଇବା ମାତ୍ରେ ଖାତାରେ ଟିପିନେଇ ସେ ସାଙ୍ଗେ ସାଙ୍ଗେ ଧାଇଁଯାଏ ।

ଘର ନାହିଁ ।

"ହୋଇଛି ଖାଲି ଘର ।"

"ଜଣେ ବାବୁ କଥା କରି ଯାଇଛନ୍ତି ।"

"ସେଠି ଯେଉଁ ନୂଆ ଘରଟି ତୋଳା ହେଉଛି ସବଲେ ମିଳିବ ?"

"ଆଗତୁରା ଭଡ଼ା ଟଙ୍କାରେ ଇଟା କିଣା ହୋଇ ନିଅଁ ପଡ଼ିଥିଲା ।"

ଘର ନାହିଁ ।

କିନ୍ତୁ ସହରର ଭୂଗୋଳ ବିଷୟରେ ଧାରଣା ହେଲା ପ୍ରଚୁର । କେଡ଼େ ସହର ! କେତେ ଗଳି ! କେଡ଼େ ବଡ଼ ।

ସହର ବଡ଼ ହୋଇଛି । ସଦାଶିବ ଯେତେବେଳେ ତାର 'କର୍ତ୍ତବ୍ୟ କାର୍ଯ୍ୟ'ରେ ବୁଲୁଥିଲା ଅରଣ୍ୟରୁ ଅରଣ୍ୟାନୀ ସେତେବେଳେ ଏ ସହରର ଲୋକେ ଘର ତୋଳାଛନ୍ତି । ରାସ୍ତା ପକେଇଛନ୍ତି । ଯୁଦ୍ଧ ବଜାର, କଣ୍ଟ୍ରୋଲ କାଳ, ଲକ୍ଷ୍ମୀ ଏ ହାତରୁ ସେ ହାତ ହୋଇଛନ୍ତି ଅନ୍ଧାରେ ଅନ୍ଧାରେ । ସହରରେ ଅସଂଖ୍ୟ ବଡ଼ ଲୋକ । ତା ପାଇଁ ଘର ନାହିଁ ।

ଯେଉଁ ଆଡ଼ୁ ଦେଖିଲେ ସହର ଦିଶୁଛି ଖୁବ୍ ବଡ଼ ବିସ୍ମୟ ପରି, ଚହଲା ସ୍ଥାନ ନାହିଁ, ତେଣୁ ସହରର ଚହଲଟି ହଜିଛି । କେଉଁଠା ଥିଲା ପୋଖରୀ; ହଂସ ଖେଳୁଥିଲେ, ସେଠି ଦିତାଲା କୋଠା । କେତେ ଥିଲା ଜଳାଭୂଇଁ, କଟରେ କଟରେ ନାଗଅଇରି ବଣ, ସେଠି ବସ୍ତି । ଅଣ୍ଟାଏ ପାଣିରେ ବି ଅଦ୍ୟାପି କୋଠା ଠିଆ ହୋଇଛି, କାମ ଚାଲିଛି । ସବୁ ଯେପରିକି ସଦାଶିବକୁହିଁ ଉପହାସ କରି ତାଳମାରି ଉଠୁଛି,—"ଆମେ ସବୁ ମାଡ଼ି ବସିଛୁ । ମଜୁରିଆର ଏଠି ସ୍ଥାନ ନାହିଁ, ଫେରିଯା—"

ଏହି ସହରରେ ଥିଲା ତାର ବସା ଘର ।

ବାଟରେ ଗଲେ ପୁରୁଣା ସ୍ମୃତି ଫେରିଆସେ ।

ହେଇତ ସେ ନାମ୍ବଗଛି । ବସାଘର ଧାଡ଼ିଏ ତାହାର ତଳେ ଥିଲି । ଆଗମୁହଁ କିଛି ପରିବର୍ତ୍ତନ ହୋଇଛି । ହେଇ ସେ ଘର । ଦୁଆରମୁହଁରେ ପହଞ୍ଚିଲା । ହୋମିଓପ୍ୟାଥି ଡାକ୍ତରଖାନା ଖୋଲିଛି । ଭିତରୁ ସମ୍ଭାଷଣ,—"ଆପଣ କାହାକୁ ଖୋଜୁଛନ୍ତି ଆଜ୍ଞା ?"

"ନା, ଏମିତି ।"

ଏ ଘର ତାର ନୁହେଁ, ତାର ଅତୀତର ।

ଆର ଗଳିରେ ଆହୁରି ଗୋଟିଏ ଘର, ଯେଉଁଠି ସେ ଥିଲା ଚାରିବର୍ଷ । ଦୁଆର ମୁହଁରେ ଠିଆ ହେଲେ ଭିତରଠାଯାକ ସବୁ ମନ ପଡ଼େ । ଆଉ ପହିଲି ଯୌବନର ଦୃଶ୍ୟ କିଛି ।

ପଡ଼ାଘର, ସେପାଖେ ପଢ଼ିଶାଘର; ଜନ୍ମଦାତ, ହାର୍ମୋନିୟମ୍ ସହିତ ଗୋଟିଏ ଝିଅର ଗଳା ।

ଦୁଆର ମୁହଁରେ ଠିଆହେଲା ।

ଭିତରୁ ଚହଲ ପଡ଼ିବ, ଦେହ ବଙ୍କେଇ ନାଚ କରି କରି ଦଉଡ଼ି ଆସିବ ତାର ପୋଷା କୁକୁର 'ଜାଲୁ' । ଜାଲୁ ପେଡ଼ା ଖାଏ ।

"କାହାକୁ ଖୋଜୁଛନ୍ତି ?" ଅତି କର୍କଶ ଗଳାରେ ରୁଢ଼ ଭାବେ ଗର୍ଜି ଉଠିଲେ ଜଣେ ମୋଟା ସୋଟା ଭଦ୍ରଲୋକ । ସଦାଶିବ ଚମକି ପଡ଼ିଲା ।

"ସଦାଶିବ ବାବୁ ଏଠି ଥାଆନ୍ତି ?"

"ନା, ହେଇ ଆଗରେ ଦେଖନ୍ତୁ ।"

ମୁଣ୍ଡ ନୁଆଇଁ ଆଗକୁ ଚାଲିଲା । ଚେତା ପଶିଲା,—କାହାକୁ ଖୋଜୁଛି ବୋଲି କହିଦେଲା ? ନିଜକୁ ତ ! ଆଗରେ ନାହିଁ ପଛରେ କେଉଁଠି । ପଛରୁ ମାଡ଼ି ଆସୁଛି ମଟରଗାଡ଼ି । କାନ୍ଥକରକୁ ଲେପଟି ଯାଉ ଯାଉ ମଟର ଚକର ଆଘାତ ଖାଇ ରାସ୍ତାର

ଗୋଲପାଣି ପିଚକାରି ମାରିଦେଲା ତାହା ଉପରକୁ । ଇସ ଦେହରୁ ଫାଟିଲେ ଗଲା । ମଠରୁରେ ଗଲେ ଧୋବଲୁଗା ଧୋବ ପଞ୍ଜାବୀ ପିନ୍ଧା ଗୋଲଗାଲ ଭଦ୍ରଲୋକ । ସେ କଣ ଜାଣିଥିବେ ? କେବେ ନୁହେଁ । ହୁଏତ ତାଙ୍କ ବେଉସା ଚନ୍ତାରେ ମଗ୍ନ । ମଠରର ଦାସ, ମଠର ଭିତରେ ଥିବା ମନୁଷ୍ୟ । ମଠରରେ ଷଡଗ୍ରସ୍ତ ରାସ୍ତାର ପଦାତକ । ଦୁହେଁ ଦୁହିଁଙ୍କୁ ଚହ୍ନନ୍ତି ନାହିଁ । ମଠର ଗୃଲେ ।

ରାସ୍ତାର ଅସନା ପାଣି ଲୁଗାରେ ବାଜିବାରୁ ଭାବୁକପଣ ଉଭେଇଗଲା । ଏଇ ସହରରେ ଅନେକ ସ୍ଥାନରେ ଥିଲା ତାର ଘର । କେବଳ ଏ ସହରରେ କାହିଁକି, ଏ ଦୁନିଆରେ ଅନେକଠି ।

କେତେଠି ତା ପାଇଁ ଜଳୁଛି ଚୁଲି, କେତେଠି ବସି ସେ ଝାଳ ପୋଛୁଛି, ବିଶ୍ରାମ କରୁଛି, ବାହାର ପ୍ରକୃତିକି ଆବୋରି ନେଇ ନିଜର ଚନ୍ତାକୁ ନିଜର ଜୀବନକୁ ରୂପ ଦେଇଛି ।

ତା ପରେ ତା ଯାଇଛି ।

ଥରେ ମାଟି ଛୁଇଁଲା ପରେ କେତେଥର କେତେଠୁ ସେ ନିଶ୍ଚିହ୍ନ ହୋଇଛି, ପୁଣି ନୂଆ ମାଟିରେ ପଲ୍ଲବ ଉଠିଛି, କେତେଥର ମରିଛି, ପୁଣି ବଞ୍ଚି ଉଠିଛି ।

ଶୋଚନା ନାହିଁ ।

ବୁଲି ବୁଲି ସଞ୍ଜରେ ଫେରିଲା ବେଳକୁ ମେଘ ଦାଲ ଦାଲ ଆକାଶ । ଗୋଟାଏ ଦିନ ଶେଷ ହୋଇଛି । ଘର ମିଳି ନାହିଁ ।

( ୬ )

ଗୃହହୀନ ସହରଯାକ ଏମୁଣ୍ଡ ସେମୁଣ୍ଡ ପାନିଆରେ କୁଣ୍ଡେଇବା ଶେଷ କରିସାରି ସଦାଶିବ ତାର କାର୍ଯ୍ୟରେ ଯୋଗଦେଲା । ଯୋଗ ଦେଲା କେବଳ କାଗଜରେ, ବସିବାକୁ ସ୍ଥାନ ନାହିଁ । ମହୁ ଫେଣା ପରି କାର୍ଯ୍ୟାଳୟ ମହୁମାଛି ପରି କର୍ମୀ । କେତେ ମାଛି ଉଡି ଆସନ୍ତି

କେତେ ଯାଆନ୍ତି ଉଡ଼—ଏମିତି ଅବହମାନକାଳରୁ । ତାଙ୍କର ଭିତରେ କେଉଁ ମାନ୍ଦି ଟିକିଏ ବଡ଼, ଟିକିଏ ମୋଟା, କିଏ ଟିକିଏ ସାନ, ଟିକିଏ ସରୁ । କିଏ ଘାଉଁ ଘାଉଁ ଟିକିଏ ବେଶୀ, କିଏ ଟିକିଏ କାମୁଡ଼ା, ଆଉ କେତେ—ସେମାନଙ୍କ ସମବେତ ସାନ ସ୍ୱର ଶୁଭେ-କ୍ଷୀଣ କରୁଣ ଆଳାପ ପରି ।

ବହୁ ଆୟାସରେ ଯୋଗାଡ଼ କରି ପାରିଲା ସାତହାତର ଖଣ୍ଡେ ପିଣ୍ଡା, ବାବୁଆନାର ଭେକ ରଖିବାକୁ ଖଣ୍ଡେ ଟେବୁଲ, ଖଣ୍ଡେ ଚଉକି, ସାମନାରେ ଦିଖଣ୍ଡ ବେଞ୍ଚ ।

ଚଉକିରେ ବସି ଟେବୁଲରେ ହାତ ରଖି ଅଣ୍ଟା ସଳଖେଇ ବଡ଼ ବଡ଼ ଆଖିକରି ସଦାଶିବ ସାମ୍ନାକୁ ଚାହିଁଲା । ସେ କର୍ମକର୍ତ୍ତା । ଏଠି ତାର ଆଧିପତ୍ୟ ।

ଗୃହଆଡ଼କୁ ନାଘା କଲା । ଛେଳି ଲଣ୍ଡି ପଡ଼ିଛି । କିଛି ଗୋବରର ଚିହ୍ନ । ଛେଳି ଗନ୍ଧ ଯନ୍ତ୍ରର ପ୍ରତିଷେଧକ କହନ୍ତି, ଟୋମସ୍ର ଡ଼ିସିନ୍‌ଫେକାଣ୍ଟ । ଅନୁଭବ କଲା—ଏଠି ବି ସେ ଏକଛତ୍ର ନୁହେଁ ।

କିଛି ସମୟ ପରେ କୁତୂହଳ ହୋଇ ଆସି ପହଞ୍ଚିଲେ ଗୋଟିଏ ଛେଳି ଓ ତାର ଛତୋଟି ଛୁଆ । ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୁହାଁମୁହିଁ ।

( ୭ )

ସଦାଶିବ ଘର ପାଇଁ ଖଣ୍ଡିଏ ଆବେଦନ କରିଥିଲା ତାର କାର୍ଯ୍ୟାଳୟରେ । ଫଳରେ ଉତ୍ତର ପାଇଥିଲା, "ସେ ଦାୟିତ୍ୱ ଆମର ନୁହେଁ ।" ତା ପରେ ପୁଣି ବ୍ୟକ୍ତିଗତ ଉଦ୍ୟମ । ପରାମର୍ଶ ମିଳିଥିଲା,—ବ୍ୟକ୍ତିଗତ ଉଦ୍ୟମରେ କୁମ୍ଭୀନ ବସେ, କୋଠା

ତୋଳା ହୁଏ, ଗୁହଲେ ଆମଦାନୀ ରପ୍ତାନି ବେପାର । ତେବେ ଅସମ୍ଭବ କଣ ? ନ ମିଳିଲେ ଉଦ୍ୟମର ଅଭାବ, ଅଳସପଣ, ନିହାତ ନ ହେଲେ ଭାଗ୍ୟର ଦୋଷ ।

ପଗୁରିଲେ ପ୍ରତିଶ୍ରୁତି ମିଳେ, ବଡ଼ ସହରର ଭଦ୍ରଲୋକମାନେ ଯେପରିକି ସାହାଯ୍ୟ କରିବାକୁ ବ୍ୟାକୁଳ ସମସ୍ତେ । ପାଟିରେ ପାନ ଓ ହସ, ବ୍ୟବହାରରେ ଶିଷ୍ଟାଗ୍ରୁର,—"ଆଜ୍ଞା, ମୁଁ କଥା ରଖିଲି । ଆପଣଙ୍କ ପାଇଁ ମିଳିବ ନାହିଁ ଖଣ୍ଡେ ଘର ?"

ଆରଦିନ ଦେଖାଦେଲେ ନୂଆ ହୋଇ ପ୍ରସ୍ତାବ ।

"କଣ ବୁଝିଲେ ଆଜ୍ଞା ?"

"କେଉଁ କଥା ? "

"ଘର ଖଣ୍ଡେ ବୁଝି ଦେଉଥିଲେ ପରା ?"

"ଓ, ସେ କଥା ! ବୁଝୁଚ୍ଛି ଆଜ୍ଞା । ପାଇଲେ କହିବି ଯେ— ପ୍ରତିଶ୍ରୁତି ମିଳେ । ଘର ମିଳେ ନାହିଁ ।

ରତ୍ନାକର ସହିଯାଏ ।

ପ୍ରତ୍ୟହ ସଞ୍ଜବୁଡ଼େ ଦମୟନ୍ତୀ ପଗ୍ରୁରେ,—"ଘର କଥା କଣ ହେଲା ?" ନୂଆ ଶିଶୁ ପ୍ରକାଶ ପାଇଁ ଚହଳ ପକାଏ, ତାର ଘର ଦରକାର ଏହିପରି ଭାବନେ, ଉତ୍ତର କଳ ଦମୟନ୍ତୀ ।

ତାର ପ୍ରସୂତି କାର୍ଯ୍ୟ ପାଇଁ ଦରଖାସ୍ତ କରି ଡାକ୍ତରଖାନାରେ ମିଳିଗଲା, ଖଣ୍ଡିଏ ବଖୁରିଆ ବସା । ସଦାଶିବ ସଦଳବଳେ ସେଠିକି ଉଠିଗଲା ।

ଶାର୍ଦ୍ଦୂଳବିକ୍ରୀଡ଼ିତ ପରମ ଆନନ୍ଦରେ ବସା ସାମ୍ନାର ଘାସ ଅଗ୍ନକରେ ନୃତ୍ୟ ଆରମ୍ଭ କରିଦେଲା,—"ଆମ ଘର, ଆମ ଘର ।"

ଅନୁଷ୍ଟୁପ, ମନ୍ଦାକ୍ରାନ୍ତା ଓ ଗାୟତ୍ରୀ ସେହି ଘାସରେ ଡେଇଁ ଲାଗିଲେ । ସୁନ୍ଦର ଘାସ, ସୁନ୍ଦର ନୂଆଁଣିଆଁ ଖରା ।

ପିଣ୍ଡାରୁ ଦମୟନ୍ତୀ ହସୁଛି ।

ସଦାଶିବ ମେଘକୁ ଅନାଇଛି, ଭାବୁଛି ଏଥର ଯେ ଜନ୍ମହେବ କ'ଣ ହେବ ତା ନାଁ ?

ସେ ପାଖ ଖଞ୍ଜାର କବାଟ ଖୋଲିଲା; ବାହାରିଗଲା ଗୋଟାଏ ମୂର୍ଚ୍ଛାର ପଟୁଆର । ସଦାଶିବ ଚମକିପଡ଼ି ପାଟିକଲା,—"ହେ ପିଲେ, ଭିତରକୁ ଚାଲ, ଭିତରକୁ ଚାଲ ।"



# ପଢ଼ରେ ପକ୍ଷୀ

ଶ୍ରୀ ଦୁର୍ଗାମାଧବ ମିଶ୍ର

ପଢ଼ରେ ପକ୍ଷୀ, ଶ୍ରୀରାମ ସୀତାପତ···ପଢ଼······ପଢ଼······

ପିଜୁଳି ଖଣ୍ଡେ ପଞ୍ଜୁରି ଭିତରେ ପୂରାଇ ଖୁଆଇ ଦେଉ ଦେଉ ସୁରେଶବାବୁ ତନ୍ମୟ ହୋଇ ଶୁଆଟିକୁ ପଢ଼ାଇ ଚାଲିଥାନ୍ତି । ଶୁଆ ଥଣ୍ଟରେ ପିଜୁଳି ଚୁଲାଏ ଲେଖାଏଁ ଆଉ ସୁରେଶବାବୁଙ୍କ ଆଡ଼କୁ ଚାହୁଁଥାଏ ସନ୍ତୋଷମିଶା ଚାହାଣୀରେ······

ଘର ଚୋଟାକ ଖାଲି ଖାଁ ଖାଁ ଦୋହଡ଼ାଉଛି—ଏତେ ବଡ଼ ସାହାଲି—ଛଅବଖରା—ଉପରେ ଟିଣ ଛପର । ସଂଧ୍ୟା ନଇଁ ନଇଁ ଆସୁଥାଏ । ସାଇକେଲଟାକୁ ବାରଣ୍ଡାରେ ଦୁଲ୍କିନା କଡ ଦେଇ ସୁରେଶବାବୁ ପହିଲେ ଶୁଆକୁ ପଢ଼ାଇ ବସନ୍ତି; ସବୁଦିନ ପରି ।

ଘରର ଏମୁଣ୍ଡରୁ ସେମୁଣ୍ଡଯାଏ କେବଳ ପ୍ରତିଧ୍ୱନିରେ ଲହରୀ ଖେଳିଯାଏ । 'ପଢ଼ରେ ପକ୍ଷୀ, ପଢ଼······'

ସୁରେଶବାବୁଙ୍କର ଖୋଲମଣା କଣ୍ଠରୁ କରୁଣନିକ୍ୱଣ ଝରି ପଡ଼େ···ଥରଉଠେ ଅନ୍ତର ତଳର ସମସ୍ତ ସୂକ୍ଷ୍ମତନ୍ତ୍ରୀ···ଚହଲି ଉଠେ ମନ···ଦୋହଲିଯାଏ ଭବନା ।

କାଆଲି ପରି ମନେ ପଡ଼ୁଛି—ଏଇ ଘର ଲୋକ ଗହଳରେ ଭାଙ୍ଗି ପଡ଼ୁଥିଲା—ଆନନ୍ଦଗୋଟା ପଡ଼ୁଥିଲା ଉଠୁଥିଲା । ଚାଲିଗଲା ଲୋକ ଦଣ୍ଡେ ଅନାଇ ରହୁଥିଲା—ମହାପାତ୍ରଙ୍କ ଘରେ ନାଇତ ମଙ୍ଗଳ ଲାଗିଛି ପରା ! ଦୁଃଖୀ, ଭିକାରୀ, ଅତିଥି ଅଭ୍ୟାଗତ କେହି ଶୂନ୍ୟ

ହାତରେ ଫେରେ ନାହିଁ ତାଙ୍କର ଦୁଆରୁ······ସମସ୍ତଙ୍କ ମୁହଁରେ ସୁନାମ ସାକ୍ଷାତ୍ ଦେବତା ।

ସୁରେଶବାବୁଙ୍କ ମୁହଁରେ ଦୁଃଖର କଳାଛାଇ ଘନୀଭୂତ ହୋଇ ଆସେ—ପିଜୁଳି ଖୁଆଉ ଖୁଆଉ ଥରି ଉଠେ ହାତ ଆଉ ଦେହର ସମସ୍ତ ଅଂଶ ।

ତଳ ସାହାନ୍ତ ସାତ ବଖରା ଘର ମାଟିରେ ମିଶିଗଲାଣି, ଧୁଦୁରା ଅନାବନା ସେଠି ମୁଣ୍ଡ ଟେକି ଉଠିଲେଣି । ଗୁଳର ନଡ଼ା ପଚି ବର୍ଷା ଦିନେ ଚାଳଛୁଚୁ ଫୁଟେ··· । ଗୁକୁଣ୍ଡା ବଣ ଭିତରେ ଦିନ ଦିପହରେ ନାଟସାପ ଖେଳିବୁଲେ·· ···

ଉକାଉକି ହେଲପରି ଗୋଟି ଗୋଟି ହୋଇ ସମସ୍ତେ ଗୁଳିଗଲେ ପଛିକୁ ପଛ । ବସ୍ତୀର୍ଣ୍ଣ ପଡ଼ିଆ ଭିତରେ ଉଇହୁଙ୍କା ପରି କେବଳ ବଅଁରହିଲେ ସୁରେଶବାବୁ, ଆଉ ତାଙ୍କର ଗୋଟିଏ ବୋଲି ପୁଅ କୁନା । ସେ ବି ଦିନେ ଗୁଳିଗଲା ଏତେ ବଡ଼ ଦୁନିଆରେ ସୁରେଶବାବୁଙ୍କୁ ନିଃସମ୍ବଳ କରି ଦେଇ—ବିଧାତାର ମନବୋଧ ହେଲ ନାହିଁ ଯିମିତି ଏତେ ବିପଦରେ ପକାଇ ତାଙ୍କୁ······

ଏକାକୀ ସେ······

ସୁରେଶବାବୁ ପିଜୁଳି ଖୁଆଉଥିଲେ ଆଉ ଭାବୁଥିଲେ, ସନ୍ଧ୍ୟା ଘନେଇ ଆସୁଥିଲା । ସେହି ମଳିନ ଅନ୍ଧାର ଭିତରୁ କିଏ ଯିମିତି ପାହାଚ ଉପରେ ଉଠି ଆସିଲା ଘର ଭିତରକୁ । ପିଜୁଳି ଖଣ୍ଡ ଖସି ପଡ଼ିଲା ସୁରେଶବାବୁଙ୍କ ହାତରୁ—ଦଉଡ଼ିଗଲେ······

କୁନା······କୁନା······

ଦୁଆରବନ୍ଧ ଝୁଣ୍ଟି ପଡ଼ିଗଲେ ତଳେ ।

ସେ ପାଖ ଘରଗୁଡ଼ାକ ନିର୍ମମ ଉପହାସ କରି ପ୍ରତିଧ୍ୱନି ତୋଳିଲେ ଯିମିତି ।

କୁନା······କୁନା······

କାଇଁ କୁନା ? କୁନା ଗୃହଲୁଯାଇଛୁ । ନାଇଁ !

ଅନ୍ଧାରରେ ନଜକୁ ନଜେ ଉଠାଇ ଲଣ୍ଠନଟା ଦରଣ୍ଡି ଧରିଲେ ସେ । ଦିଆସିଲିଟା ଥଣ୍ଡା ଲଗି ଜାଡ଼ ଯାଇଛୁ । ଦୁଇ ତନିଟା କାଠି ମାରିବା ପରେ ନିଆଁ ଧରିଲା । କୁନାର ଫଟୋ ସାମନାରେ ମହମବତୀ ଜଳି ଉଠିଲା । ସୁରେଶବାବୁ ତାକୁ ଚାହିଁ ରହିଲେ । ଦୁଇଟୋପା ଲୁହ ଗଡ଼ି ପଡ଼ିଲା ମହମବତୀ ଉପରେ ।

ଦଉଡ଼ିଗଲେ ପଞ୍ଜୁରି ପାଖକୁ—ଆଦରରେ ଶୁଆଟିକୁ ସାଉଁଳେଇ ଆଣିଲେ ପିଠି ଉପରକୁ । କ ଚକ୍‌କଣ କଅଁଳିଆ ପରଗୁଡ଼ିକ ।

ତୃପ୍ତିର ନିଃଶ୍ୱାସ ଝରିପଡ଼ିଲା······

ସାନ୍ଧ୍ୟ ନୀରବତା ଭେଦକରି ବଷ୍ଟୁବାବୁ ଦୁଆରେ ଡାକିଲେ । ସୁରେଶବାବୁଙ୍କର ଘନିଷ୍ଠ ବନ୍ଧୁ ଏଇ ବଷ୍ଟୁ ବାବୁ । ଆଦରରେ ପାଖରେ ଆଣି କହିଲେ—ଶୁଣିଲୁଣି ବଷ୍ଟୁ ମୋ ଶୁଆଟି କାହିଁକି ଦି'ଦିନ ହେଲା କିଛି ଖାଉ ନାହିଁ ।

'କାହିଁକି ତାକୁ ଭାତ ଖାଇବାକୁ ଦଉନୁ ।' ବଷ୍ଟୁ ବାବୁ ଘରଭିତରେ ପ୍ରବେଶ କରୁ କରୁ କହିଲେ, "ଭାତ ଖାଇଲେ ସିନା ଠାଣ ହେବ ।"

—ଭାତ ! ହଁ, ଭାତ ତ ମୁଁ—

—ତୁ ଭାତ ଖାଉନୁ, ଦିନୁଦିନ ରୂପ କଣ ହେଲଣି ଦିଶୁଛୁ । ଯେତେ କହିଲେ ଶୁଣୁନୁ । ଆଉ ଶୁଆ କଥା କାହିଁକି ଭାଳେଣି ପଡ଼ୁଛୁ ଶୁଣେ ।

—ନାଇଁ ବଷ୍ଟୁ ତୁ ସେମିତି କହନା । ମୋର ଶୁଆର କିଛି ହେଲେ ମୁଁ ମୋତେ ସମ୍ଭାଳି ପାରିବ ନାଇଁ । କହ ମୁଁ କଣ କରିବ ?

—ମୋ ହାତରେ ଅଛି କଣ ? କହିଲ, ଆଉଥରେ ସଂସାର କର । ଏତେ ବଡ଼ ବଂଶ । ଇମିତି ବୁଡ଼ିଯିବ ସିନା । କହରେ ଲୋକେ ତ ଯାଚିଲେ ବାଳରେ ବାହା ହେଉଛନ୍ତି—ତୁ ତ କାଲିକା ପିଲା—ମୋ' କଥା ମାନ, ଭାଇ, ଆଉଥରେ ଘରସଂସାର ଆରମ୍ଭ କର୍ ଦେ—

— ! ସଂସାର ! !

ଆପଣା ଅଜାଣତରେ ସୁରେଶବାବୁଙ୍କର ଆଖି ବୁଲିଗଲା କୁନାର ପ୍ରତିକୃତି ଆଡ଼େ । ତାଙ୍କର ଭଙ୍ଗା ଚୂନା ଦେହ ଦୋହଲିଲା । କିଏ ଯେମିତି ପ୍ରତିଧ୍ୱନି ତୋଳିଲା—

—ଘର ! ସଂସାର ! !

ନିର୍ଜନତା ଭେଦ କରି ଅଗଣା ପାଖ ଗୃହଳ ଉପରେ ଦୁଇଟା ପଥହରା ପାରା ଘୁମୁରି ଉଠିଲେ ।

—ତାହା ହେଲେ, ଗୁଡ଼ ! ଏଇକ୍ଷଣି ଖାଇବୁ କଣ !

—ଯାହା ସବୁଦିନେ ଖାଏ ।

—ତୁ ସିମିତି କହନା । ମୁଁ ଖାଇବାକୁ ନେଇ ଆସୁଛି ।

ନାହିଁ ଭାଇ ମୁଁ ଜଳଖିଆ ଖାଇ ଆସିଛି, ଭୋକ ନାହିଁ ! ଗ୍ଲ' ଟିକିଏ କରି ଖାଇଦେବି । ବଣ୍ଟୁବାବୁ ଜାଣିଲେ, ସୁରେଶବାବୁ ମିଛ କହୁଛନ୍ତି । ନୀରବ ରହିଲେ ।

—ତେବେ ଗ୍ଲ' କଟେ ଆଣି ଦେଉଛି ।

—ନା, ମୁଁ ଗ୍ଲ, କରିଦେବି । ବରଂ ଶୁଆ ପାଇଁ ଗଣ୍ଡିଏ ଭାତ—

ବଣ୍ଟୁବାବୁ ଦୁଃଖରେ ଭାଙ୍ଗି ପଡ଼ିଲେ—

ଛଳ ଛଳ ହୋଇ ଆସିଲା ଆଖିପତା ତାଙ୍କର । ଉଠା ଚୁଲିଟାରେ ପୁଳାଏ ଋଦ୍ଧିକାଗଜ ପୂରାଇ, ଗୃହା କେଟଲି ଥୋଇଲେ

ସୁରେଶବାବୁ, ବ୍ରୁକ୍‌ବଣ୍ଡ ଗ୍ରୀନ୍‌ଲେବଲ୍, କନ୍‌ଡେନ୍‌ସ୍‌ଡ଼୍ ମିଲ୍‌କ, ଇଆର ଉପରେ ଦିନାଦିନ କଟିଗଲାଣି ଆଜିକୁ । କେତେଦିନ ଯିବ ଇମିତ ?

ଦୁଇଟୋପା ଲୁହ ଟପ୍ ଟପ୍ ହୋଇ ଗ୍ରୀ' କପ୍ ଉପରେ ଖସି ପଡ଼ିଲା ।

ଗ୍ରୀ' ଥଣ୍ଡା ହେଉଛି ଯେ—

ବନ୍ଧୁବାବୁ ଶୁଆପାଇଁ ଭାତ ଧରି ପହଞ୍ଚିଲେ । ଚମକି ପଡ଼ିଲେ ସୁରେଶବାବୁ—

— ଭାତ ଆଣିଛ ?

— ହିଁ, ଗ୍ରୀ ଖାଇନାଅ ଆଗେ ।

—ମତେ ଦିଅ, ମୁଁ ପହିଲେ ଶୁଆକୁ ଖୁଆଇ ଦେଇ ଆସେଁ । ଦୁଇଦିନ ହେଲା କିଛି ଖାଇନି ସେ···

ହାତରୁ ଭାତ ଥାଳିଆ ଛଡ଼ାଇ ନେଇ ସୁରେଶବାବୁ ଶୁଆ ପଞ୍ଜୁରି ପିଠାଇଲେ । ଆଗ୍ରହରେ ଶୁଆ ଭାତରେ ଥଣ୍ଟ ପୂରାଇଲା— ଉଷୁମ ଉଷୁମ ଭାତ—ଗରମ ବାସ୍ନା ପବନରେ ଖେଳି ବୁଲୁଥାଏ ।

ବନ୍ଧୁବାବୁ ବିଦାୟ ନେଲେ—

ଥଣ୍ଡା ଗ୍ରୀ କପ୍‌କ ପିଇ ଦେଇ ସୁରେଶବାବୁ ବିଛଣା ସଜାଇଲେ । କୁନାର ଫଟୋ ଦିହରେ ପ୍ୟାଣ୍ଟ କମିଜ ଦିଆ ହୋଇଅଛି । ଶେଯରେ ଗୋଟାଏ କଡ଼ରେ ଫଟୋଟିକୁ ଶୁଆଇ ଦେଇ ନିଜେ ଆର କଡ଼ରେ ଶୋଇପଡିଲେ । ଉପରେ ରେଜେଇ ଟାଣି ଆଣିଲେ ।

କୁନା ସବୁଦିନ ଏପରି ଶୁଏ ତାଙ୍କର ପାଖେ । ମୁଣ୍ଡ ପାଖ ଝରକା, ଆରପାଖ ବାରଣ୍ଡାରେ ଶୁଆର ପଞ୍ଜୁରି । କରୁର କରୁର ହୋଇ ଆହ୍ଲାଦର ରାଗିଣୀ ବୋଲୁଥାଏ ସେ । ଇଆରି ଭିତରେ ସୁରେଶବାବୁଙ୍କର କର୍ମକ୍ଲାନ୍ତ ଆଖିପତା ନଇଁ ଆସିଲା ।

× × × ×

'ବାବୁ, ଆଜି ଉଠିବେ ନାହିଁ ? କେତେ ବେଳ ହେଲାଣି ଯେ—ବାବୁ, ବାବୁ···'

ବିକଟ ସ୍ୱପ୍ନଟାଏ ଦେଖି ନିଦ ଭାଙ୍ଗି ଗଲା ସୁରେଶ ବାବୁଙ୍କର···ଚାଦର ଉଠିଲେ ସେ । ବାହାରେ ଦିନ ଆଲୁଅ ଝରକା ଦେଇ ପଶିଆସୁଛି । ବାସି ପାଇଟି କରିବା ପାଇଁ ପୋଇଲାଟା ଡାକ ପକାଉଛି ।

ତରତର ହୋଇ ବିଛଣାରେ ଉଠି ବସିଲେ ସେ··· ।

ସବୁଦିନ ସକାଳ ପରି ଶୁଆ ଆଜି ସକାଳୁ କର୍‌ର କର୍‌ର ହେଉନି । ସେ କ'ଣ ଶୋଇ ପଡ଼ିଛି କି ? ନା—

ଆଶଙ୍କାରେ ଥରି ଉଠିଲା ସୁରେଶ ବାବୁଙ୍କ ମନ, କ'ଣ ହେଲା ?

ବିଛଣାରୁ ଡେଇଁ ପଡ଼ିଲେ ଏକାଥରକେ । ମନେ ନାହିଁ ଫନ୍ଦୋଟି ଶେଯ ଉପରେ ଥିଲା ବୋଲି—ରେଜେଇ ସାଥିରେ ଛିଟିକି ପଡ଼ିଲା ସିମେଣ୍ଟ ଚଟାଣ ଉପରେ··· ।

ବାହାରେ ଗୃହିଣୀ ପାଟି କରୁଥାଏ···

ବ୍ୟସ୍ତହୋଇ ଦଉଡ଼ିଗଲେ ପଞ୍ଜୁରି କତକୁ ସେ—

ଶୁଆ ପଞ୍ଜୁରି ମେଲା ପଡ଼ିଛି—ଶୁଆ ଉଡ଼ି ଯାଇଛି ।

ପ୍ରତିଦିନ ତାଲାଦେଇ ଶୁଅନ୍ତି ସେ । ତାଙ୍କ ଶୁଆ ଏତେ ଅକୃତଜ୍ଞ ହୋଇ ପାରେ ନା । ପଞ୍ଜୁରି ଭିତରେ ହାତ ପୂରାଇ ଅଣ୍ଡାଳିଲେ ସେ—ସବୁ ଅଛି ଗୋଟିଏ ଡିମ୍ବିଟି—କେଉଁଠି ଲୁଚି ଯାଇଛି ।

ପାଗଳାଙ୍କ ପରି ସୁରେଶ ବାବୁ ଦଉଡ଼ିଲେ ବାରିଆଡ଼େ ।

କୁଆଟା—ପର ଲାଗି ଆସୁଥିଲା । ହୁଏତ ବେଶୀ ବାଟ ଯାଇ ପାରି ନ ଥିବ ।

ଗୃହକର୍ତ୍ତୀ ଡାକ ଡାକ ନଶୁଣିବାରୁ ବାହାରିବାକୁ ବୁଲିକରି ଆସୁଥିଲା । ହଠାତ୍ କାହିଁକି ଅଟକିଗଲା ସେ ।

'କଣ କଲେ ବୁଢ଼ାଧଇ—?'

ମୁହଁ କଳା ପଡ଼ିଗଲାଣି ବୁଧେଇର—ସେତେବେଳକୁ ।

ପାହୁଣ୍ଡେ ଆଗକୁ ଯାଇ ଦେଖିଲେ ସୁରେଶବାବୁ—କଗୃହ ହୋଇ ତଳେ ପଡ଼ିଗଲେ । କ୍ଷତବିକ୍ଷତ ହୋଇ ଶୁଆଟି ତଳେ ପଡ଼ିଛି । ରକ୍ତରେ ଭିଜି ଯାଇଛି ଭୂଇଁ ଖଣ୍ଡିକ ।

ଶୁଆଟି ଉଡ଼ି ଯାଇନାହିଁ; କେବଳ ମରିଯାଇଛି ? ମରିଯାଇଛି···ଠିକ୍ ଯେମିତି···ମୁର୍ଚ୍ଛା ହୋଇଗଲା ସୁରେଶବାବୁଙ୍କର···

ଗୃହକର୍ତ୍ତୀ ପାଟିକରି ଡାକ ଛାଡ଼ିଲା । ଚଳାଏ ଚଳାଏ ପାଣି ମୁହଁରେ ମାରି ଚେତା କରି ବସିଲ ତାଙ୍କୁ ।

ଆଖି ଖୋଲିଲା ବେଳକୁ ସୁରେଶବାବୁ ଶେଯରେ । ତାଙ୍କ ଘରପାଖେ ଲୋକ ଜମି ଯାଇଛନ୍ତି

ଧଡ଼ାସ୍‌କିନା ଉଠିପଡ଼ି ସୁରେଶବାବୁ ଚିତ୍କାର କଲେ, "ମୋ ଶୁଆ କାହିଁ ? ମୋ ଶୁଆକୁ ମୋତେ ଦେଇଦିଅ, ତୁମେମାନେ ସବୁ ଯାଅ ଏଠୁ ।"

ଶୁଆ ସେତେବେଳକୁ ମାଟିତଳେ ସମାଧି ପାଇ ସାରିଥିଲା ।

ସୁରେଶ ବାବୁଙ୍କ ଦେହରେ ଶହେ ପାଞ୍ଚ ଡ଼ିଗ୍ରୀ ତାତି । ଖାଲି କ୍ଷୀଣ କଣ୍ଠରୁ ଶୁଭୁଥାଏ—

ମୋ କୁନା କୁଆଡ଼େ ଗଲା, ମୋତେ ଦିଅ । ମୋ ଶୁଆ କୁଆଡ଼େ ଗଲା, ମତେ ଦିଅ । ଦିଅ ମୋ କୁନାର ଫଟୋ, ଦିଅ ମୋର ମଲା ଶୁଆକୁ—

ଫଟୋଟି ଜଣେ କେହି ଧରାଇ ଦେଲା । ଠୁକୁରି ଠୁକୁରି କାଚ ଗୁଣ୍ଡ ଫଟୋ ଦେହରେ ଲାଗି ରହିଥାଏ । ତହିଁରେ ଆପଣା ଆଙ୍ଗୁଳି

ଚୁଲାଇ ଆଣି ଥର ଉଠିଲେ ସୁରେଶବାବୁ । ଆଖିର ଦୁଇକୋଣରୁ ଛଲଛଲ ଦି ଟୋପା ଲୁହ ଗଡ଼ି ପଡ଼ିଲା ।

ମୋ' କୁନା, ମୋ କୁନ......ମୋ' ଶୁଆ.........

ଫଟୋଟିକୁ ଗ୍ଲାସ ଭିତରେ ପୁରାଇ ଦୁଇ ହାତରେ ବଦ୍ଧୁତ ଜୋରରେ ଚୁପି ଧରିଲେ ସେ । ଦୁର୍ବଳ କାଗଜର ଫଟୋଟା ଏତେ ଜୋର ସମ୍ଭାଳିବ କାହୁଁ ? ମଝିରୁ ଦୁଇଖଣ୍ଡ ହୋଇଗଲା । ଉପରକୁ ଉଠାଇ ଆଣି ସୁରେଶବାବୁ ଦେଖିଲେ ଫଟୋଟି ଚିରି ଯାଇଛି ।

କୁନା ମୋର ମରି ଯାଇଛି ।

ଶୁଆ ମୋର ମରି ଯାଇଛି...

ହାଃ, ହାଃ, ହାଃ,

ମୁଣ୍ଡଟା ପ୍ରବଳ ଉତ୍ତେଜନାରେ ଉପରକୁ ଉଠି କାତ ହୋଇଗଲା ତକିଆ ଉପରେ ........ ।



# ମହିଷ

ଶ୍ରୀ ଅନନ୍ତପ୍ରସାଦ ପଣ୍ଡା

ଚଇତର କଅଁଳ ପାହାନ୍ତି । ବାଡ଼ି ଅଗଣ୍ଡାର ମଲ୍ଲୀ ବୁଦାଟିରେ ଅସଂଖ୍ୟ ଫୁଲ ଫୁଟି ଲଦି ହୋଇ ପଡ଼ିଛି । ଆଜି ତାର ସୁବାସ ଝଲକେ ଝଲକେ ଦକ୍ଷିଣା ପବନ ଖୋଲା ଝରକା ଭିତର ଦେଇ ବୋହି ଆଣି ସୁରଭିର ଶେଯ ଉପରେ ଅଜାଡ଼ି ଦେଉଛି । ସୁରଭି ଶୋଇଛି ବେଶ୍ ଆରାମରେ, ଅବଶ୍ୟ ନିଦ ତାର ଟିକିଏ ହାଲୁକା ହୋଇ ଆସିଲାଣି । କିନ୍ତୁ ସମ୍ପୂର୍ଣ୍ଣ ଭାଙ୍ଗି ଯାଇନାହିଁ । ତନ୍ଦ୍ରାର ଆବେଶରେ ସୁରଭିର ଆଖି ଯୋଡ଼ିକ ମୁଦି ଯାଇଛି, ଆଉ ମନ ତାର ଉଡ଼ି ବୁଲୁଛି କେଉଁ ଅତୀନ୍ଦ୍ରିୟ ରାଇଜରେ , ସପନର କୁହୁକ କାଠି ସ୍ପର୍ଶରେ ।

ହଠାତ୍ ପଛପଟେ ରୋମାନକାଥଲିକ ଗୀର୍ଜାଟାର ବିଶାଳ ଘଣ୍ଟାଟା ଢ଼ଂ ଢ଼ଂ ଢ଼ଂ କରି ବାଜି ଉଠିଲା । ତା ପଛକୁ ଲାଗିଲାଗି ମସଜିଦଟାର ମଞ୍ଚା ଉପରୁ ଦାଢ଼ିଆ ମୋଲ୍ଲା ଅତି ବଡ଼ ପାଟିରେ ଚିତ୍କାର କରି ଉଠିଲା—"ଆଲ୍ଲା ହୋ ଆକବର ।" ଖାଲି ସେତିକିନୁହେଁ--ଦକ୍ଷିଣ ଦିଗରେ ଥିବା ରସିକବନ୍ଧୁଙ୍କ ମନ୍ଦିରରେ ପ୍ରଭାତୀ କୀର୍ତ୍ତନ ଉଚ୍ଛୁଳି ପଡ଼ିଲା । ତା ସଙ୍ଗେ ସଙ୍ଗେ ପଡ଼ୋଶୀ ଘର ବୁଢ଼ା ରାମ ରଥେ ଦାଣ୍ଡ ପିଣ୍ଡାରେ ବସି ହରେ ମୁରାରେ ମଧୁ କୈଟଭାରେ, ଗୋବିନ୍ଦ ଗୋପାଳ ମୁକୁନ୍ଦ ସୌରେ' ପ୍ରଭୃତି ପ୍ରଭାତୀ ସ୍ତୁତି ଖୁବ୍ ଯୋର ଗଳାରେ ଗାଇ ଉଠିଲେ । ବାଡ଼ିପଟେ ଭାଡ଼ି ଭିତରୁ ରୋଡ଼ସ୍ ଆଇଲଣ୍ଡ ଚେଙ୍ଗାଟା ଚିତ୍କାର କରି ଉଠିଲା 'ରଖ୍‌ଖ ଗୋ ଚକ୍‌କ ।'

ସୁରଭିର ନିଦଟା ଚିହୁଙ୍କିନା ଭାଙ୍ଗିଗଲା । ମନରେ ଗୋଟାଏ ବିରକ୍ତି ଭାବ ମଧ୍ୟ ଜାଗି ଉଠିଲା । ତାର ମନେହେଲା ସତେ ଯେପରି

ଦୁନିଆଁସାରା ତାର ଏ ସୁଖ ନିଦ୍ରା ଭାଙ୍ଗି ଦେବାପାଇଁ ଗୋଟାଏ ଷଡ଼ଯନ୍ତ୍ର ବାନ୍ଧିଛନ୍ତି ।

ଠିକ୍ ଏତିକିବେଳେ ଭୋର ଗାଡ଼ିକୁ ନେଇଯିବା ପାଇଁ କଣ୍ଟ୍ରାକ୍ଟ ଦେଇଥିବା ରିକ୍ସାବାଲାଟା ଆସି ପଡ଼ୋଶୀ ଘରେ ଚିତ୍କାର କରି ଉଠିଲା—ବାବୁ ଉଠ, ଯିବା ପରା ବେଳ ହୋଇଗଲାଣି ଯେ । ଦାଣ୍ଡ ଆର ପଟକରେ ଚାଉଳ ବସ୍ତାଟା ମଧ୍ୟ ପେଁ ପେଁ ପେଁ ହର୍ଣ୍ଣ ବଜାଇ ଧାଇଁଗଲା । ସୁରଭି ଆଉ ଶାନ୍ତିରେ ଶୋଇ ପାରିଲା ନାହିଁ । ମୁଣ୍ଡ ଟେକି ବାହାରକୁ ଚାହିଁଲା—ଏବେ ସୁଦ୍ଧା ଅନ୍ଧାର ସମ୍ପୂର୍ଣ୍ଣରୂପେ କଟି ଯାଇନାହିଁ ରାସ୍ତାଘାଟ ଭଲ ଦିଶୁନାହିଁ । ଆକାଶର କୁଆଁ ତରାଟା ଖାଲି ଜକ ଜକ ଜଳୁଛି । ଆଉ ଦାଣ୍ଡ ଆଗରେ ଠିଆ ହୋଇଥିବା ବୁଢ଼ା ଶିମିଳି ଗଛଟାରେ ଚଢ଼ିଲା କେତେଟା ଚେଁ ଚେଁ କଟରମଟର ଲଗାଇଛନ୍ତି । ରଥ ବୁଢ଼ା ଇତି ମଧ୍ୟରେ ନିତ୍ୟକର୍ମ ସାରିଦେଇ ଦାଣ୍ଡ ପିଣ୍ଡାରେ ବସି ଗଗନଭେଦୀ ସ୍ୱରରେ ଛାଡ଼ିଦେଲେଣି ଶରୀରଭେଦ ଭଜନ—'କେତେ ଦିନକୁ ମନ ବାନ୍ଧିଛୁ ଆଶ୍ରେ ରେ, କି ଦେଖିଯିବୁ ତୋର ଛୁଟିଲେ ଘଟ, ତେ ଖଟ ପଲଙ୍କେ ମନ ଶୋଇ ଶୋଉ, ଖାଲି ଦୁର୍ଗନ୍ଧ ହେବ ଏ ତୋର ଦେହ ରେ—'

ରଥ ବୁଢ଼ାଙ୍କର ଏ ବୈରାଗ୍ୟବ୍ୟଞ୍ଜକ ଗୀତ ଶୁଣି ସୁରଭିର ଶରୀର ଘୃଣାରେ ରୋମାଞ୍ଚିତ ହୋଇ ଉଠିଲା । ଯୌବନର ରଙ୍ଗ ଦେଶରେ ମାତ୍ର ପାଦ ଦେଇଛି ସେ । ଆଗରେ ରଙ୍ଗୀନ୍ ଜୀବନର ମଧୁର ସ୍ୱପ୍ନ । ଏତେବେଳେ କି ଏ ସବୁ ବୈରାଗ୍ୟ-ବ୍ୟଞ୍ଜକ କବିତା ଭଲ ଲାଗେ ? ସୁରଭି ମନେ ମନେ ବୁଢ଼ା ଉପରେ ଖୁବ୍ ରାଗିଗଲା । ମନକୁ ମନ କହି ପକାଇଲା—ବାସ୍ତବିକ କେଡ଼େ ସ୍ୱାର୍ଥପର ଏମାନେ । ନିଜର ଆତ୍ମପ୍ରସାଦ ପାଇଁ ବା ପରମାର୍ଥ ଲାଭ

ଆଶାରେ ଏପରି ଉତ୍କଟ ଉପଦ୍ରବର ସୃଷ୍ଟି କରୁଛନ୍ତି ଅଥଚ ତଦ୍ଦ୍ୱାରା ପ୍ରତିବେଶୀର କି ଅସୁବିଧା ହେଉଛି ତାହା ଟିକିଏ ହେଲେ ଏମାନେ ଭାବୁ ନାହାନ୍ତି ।

ସୁରଭିର ଏ ସ୍ୱଗତୋକ୍ତି ଶୁଣି ପାଖ ଖଟରେ ଶୋଇଥିବା ସୁରଭିର ସ୍ୱାମୀ ସୁରେଶ ପଚାରିଲେ—ସୁରଭି ଏତେ ଶୀଘ୍ର ଉଠି ପଡ଼ିଲ ଯେ ? ଦେଖୁନାହଁ ରାସ୍ତା ଘାଟ ଏପର୍ଯ୍ୟନ୍ତ ସଫା ହୋଇ ଦିଶିନାହିଁ—କୁଆଁ ତାରା ଲୁଚି ନାହିଁ ସୁରଭି ବିରକ୍ତିଭରା ସ୍ୱରରେ କହିଲା—ଏମାନେ କ'ଣ ମଣିଷକୁ ଟିକିଏ ଶାନ୍ତିରେ ଶୁଆଇ ଦେଉଛନ୍ତି ।

ସୁରଭି ଗୀର୍ଜା, ମସଜିଦ ଓ ମନ୍ଦିରରେ ହେଉଥିବା ଲୋକଦେଖାଣିଆ କଥା କହିଲା । ସୁରେଶ ସହାନୁଭୂତି ସୂଚକ ଗଳାରେ କହିଲେ—ହଁ ଠିକ୍ କହିଲ ସୁରଭି । ଯେପର୍ଯ୍ୟନ୍ତ ମନୁଷ୍ୟ-ସମାଜ ଏସବୁ ଆତ୍ମପ୍ରତାରଣାରୁ ମୁକ୍ତି ନ ପାଇଛି ଓ ଯେ ପର୍ଯ୍ୟନ୍ତ ମନୁଷ୍ୟ ପ୍ରତି ମନୁଷ୍ୟର କର୍ତ୍ତବ୍ୟ ବୁଝି ନ ପାରିଛି ସେ ପର୍ଯ୍ୟନ୍ତ କେଉଁଠାରେ ସୁଖ ଶାନ୍ତି ଆସି ପାରିବ ନାହିଁ । ଚାହିଁ ଦେଖୁନା, ମନ୍ଦିର କହ; ମସ୍‌ଜିଦ କହ ବା ଗୀର୍ଜା କହ ଏସବୁ ତ ସେଇ ଏକ ପରମାତ୍ମା ପରମେଶ୍ୱର ବା ବିଶ୍ୱସ୍ରଷ୍ଟାଙ୍କର ଆରାଧନା ପାଇଁ ସୃଷ୍ଟି । ସମଗ୍ର ମାନବ ସମାଜ ତ ସେଇ ପରମ ପିତାଙ୍କର ସନ୍ତାନ । ଏ ଭାବ ଯଦି ମନୁଷ୍ୟ ମନରେ ଜାଗି ଉଠନ୍ତା ତେବେ ପୃଥିବୀ ସିନା ସ୍ୱର୍ଗରେ ପରିଣତ ହୋଇପାରନ୍ତା, କିନ୍ତୁ ଦୁନିଆରେ ଦେଖୁଛ କଣ ଧର୍ମ ନାମରେ ସାମ୍ପ୍ରଦାୟିକତା, ସଂକୀର୍ଣ୍ଣତା ମନୁଷ୍ୟକୁ ପଶୁ ସ୍ତରକୁ ନେଇ ଯାଉଛି । ମନୁଷ୍ୟ ଧର୍ମାନ୍ଧ ହେଲେ ନ କରିପାରେ କଣ ? ହେଇ କାଲି ସକାଳେ ପାକିସ୍ଥାନରୁ ପଳାଇ ଆସିଥିବା ସେଇ ବୁଢ଼ୀଟିକୁ ଦେଖିଲ ତ ? କଣ ପାଇଁ ଆଜି ସେ ସର୍ବହରା ହୋଇ ଭିକ ମାଗି

ବୁଲୁଛି । ମାନବର ଏଇ ଧର୍ମାନ୍ଧତା ଯୋଗୁଁ ନୁହେଁ କି ? ସେଇ ଧର୍ମାନ୍ଧତାର ମୂଳରେ ମାନବର ସଂକୀର୍ଣ୍ଣ ସ୍ୱାର୍ଥପରତା ଲୁଚିନାହିଁ କି ?

ସୁରଭି ଦୀର୍ଘଶ୍ୱାସ ପକାଇ କହିଲା—ହଁ ଠିକ କହିଲ । ଆମ ଦେଶର ମନୁଷ୍ୟ ଯଦି ମନୁଷ୍ୟ ଭାବରେ ବଞ୍ଚିରହି ମନୁଷ୍ୟୋଚିତ କାର୍ଯ୍ୟ କରନ୍ତେ ତେବେ ଦୁନିଆଟା ସ୍ୱର୍ଗରେ ପରିଣତ ହୋଇପାରନ୍ତା ସିନା ! ସମାଜର ପ୍ରତ୍ୟେକ ଲୋକ ଯଦି ପରସ୍ପରର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସହଯୋଗ ସୂତ୍ରରେ ଆବଦ୍ଧ ହୁଅନ୍ତେ ତେବେ ଦୁନିଆରେ ଦୁଃଖ ଦୁର୍ଦ୍ଦଶା ରହନ୍ତା କାହିଁକି ? ସୁରଭିର ଆଖି ଛଳ ଛଳ ହୋଇ ଉଠିଲା । ଜୀବନରେ ବାଇଶଟି ଋତୁ ଭୋଗ କରିଛି ସେ । କିନ୍ତୁ ଏଇ ଅଳ୍ପ ସମୟ ମଧ୍ୟରେ ତାର ଭାବ ପ୍ରବଣ ମନ ଦୁନିଆର ଦୁଃଖ ଦୁର୍ଦ୍ଦଶାରେ ଉଦ୍ବେଳିତ ହୋଇ ଉଠିଛି । ସେ ଦେଖିଛି ଏଇ ଧର୍ମାନ୍ଧତାର ସଂକୀର୍ଣ୍ଣତା କିପରି ଲକ୍ଷ ଲକ୍ଷ ମହାପ୍ରାଣୀଙ୍କୁ ଆଜି ସର୍ବହରା ପଥର ଭିକାରୀ କରି ବୁଲାଇଛି, ହଜାର ହଜାର ନିରୀହ ମାନବ ଶିଶୁର କଅଁଳ ଛାତିରେ କ୍ରୂର ରାକ୍ଷସର ଶାଣିତ ଛୁରିକା ଭୁଷି ଦେଇଛି—ଅସଂଖ୍ୟ ନାରୀର ନଗ୍ନ ମାଂସ ଉପରେ ହିଂସ୍ର କ୍ଷୁଧିତ ବ୍ୟାଘ୍ର ପରି ଲମ୍ଫ ଦେଇ ଉଠିଛି । ଏ ସବୁ ଦେଖି ତାର ପ୍ରାଣ ହାହାକାର କରି ଉଠିଛି । ସେଥିପାଇଁ ସେ ଚାହେଁ ନାହିଁ କୌଣସି ସାଂପ୍ରଦାୟିକତାର ଧାର ଧରିବା ପାଇଁ । ସେ ଚାହେଁ ସହଜ ସରଳ ସହାନୁଭୂତିଭରା ମାନବ ଜୀବନ ।

ଗୋଟିଏ ନୈଷ୍ଠିକ ଖ୍ରୀଷ୍ଟୀୟ ପରିବାରରେ ଜନ୍ମ ହୋଇଥିଲା ସୁରଭି । ପିଲାଟିଦିନୁ ସେ ବାପ ମା'ଙ୍କ ସଙ୍ଗରେ ପ୍ରତି ରବିବାରରେ ଯାଉଥିଲା ଗୀର୍ଜାକୁ । ସେଠାରେ ପାଦ୍ରି ସାହେବ ଧର୍ମଗ୍ରନ୍ଥ ପଢି ପ୍ରାର୍ଥନା କରୁଥିଲେ । ସୁରଭି ସମସ୍ତଙ୍କ ସଙ୍ଗରେ ଆଣ୍ଠୁ ମାଡି ବସି ପ୍ରାର୍ଥନାରେ ଯୋଗ ଦେଉଥିଲା, ଗୀତ ଗାଉଥିଲା, କିନ୍ତୁ ତାର ଅର୍ଥ

କିନ୍ତୁ ବୁଝି ନ ଥିଲା । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ସେ ବୁଝିପାରିଲା ଯେ ଯେଉଁମାନେ ଗୀର୍ଜାକୁ ଯା'ନ୍ତି ସେମାନଙ୍କ ମଧ୍ୟରୁ ଅତି ଅଳ୍ପ ଲୋକେ ପ୍ରକୃତ ଧର୍ମରେ ଅନୁପ୍ରାଣିତ ହୋଇ ପ୍ରାର୍ଥନା କରନ୍ତି; କିନ୍ତୁ ଆଜି ଅଧିକାଂଶ ଗୀର୍ଜାକୁ ଯାନ୍ତି, ଖାଲି ଗୋଟିଏ ମିଳାମିଶା ବା ଆସଙ୍ଗଲିପ୍ସା ନେଇ ।

ମେଡ଼ିକେଲ କଲେଜରେ ପଢ଼ୁଥିବା ବେଳେ ସୁରଭିର ପରିଚୟ ହେଲା ତା'ର ପଢ଼ା ସାଥି ସୁରେଶ ସଙ୍ଗରେ । ସୁରେଶ ଥିଲା ନୈଷ୍ଠିକ ହିନ୍ଦୁ ପରିବାରର ସନ୍ତାନ । ଉଭୟଙ୍କର ପରିଚୟ କ୍ରମଶଃ ଅନୁରାଗରେ ପରିଣତ ହେଲା । ଉଭୟେ ପରସ୍ପର ପ୍ରତି ପ୍ରଣୟାସକ୍ତ ହୋଇ-ପଡ଼ିଲେ, କିନ୍ତୁ ଏ ଦୁଇଟି ପ୍ରେମାସକ୍ତ ପ୍ରାଣରେ ମଝିରେ ଏକ ଅଲଙ୍ଘ୍ୟ ମେଘନାଦ ପ୍ରାଚୀର ସୃଷ୍ଟି କଲା ଧର୍ମଗତ ପାର୍ଥକ୍ୟ ।

ସୁରଭିର ପିତା'ମାତା ଯେତେବେଳେ ସୁରଭିର ମନୋଭାବ ଜାଣିଲେ ସେତେବେଳେ ସହାନୁଭୂତିସୂଚକ କଣ୍ଠରେ କହିଲେ — ମା ତୋର ପସନ୍ଦରେ ଆମର ଅସମ୍ମତି ନାହିଁ, ତେବେ ସୁରେଶକୁ ଉତ୍ତମ ନେଇ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ହେବ । ପିତାମାତାଙ୍କର ଏ ସର୍ତ୍ତସମ୍ବଳିତ ସମ୍ମତି ସୁରଭି କୌଣସିମତେ ଗ୍ରହଣ କରିପାରିଲା ନାହିଁ । ସେ ଯୁକ୍ତି କରି କହିଲା—ତୁମେ ଯେପରି କହୁଛ ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ, ତାଙ୍କର ପିତାମାତା ସେହିପରି ମୋତେ ହିନ୍ଦୁଧର୍ମ ଗ୍ରହଣ କରିବା ପାଇଁ କହିବେ । କାହିଁକି ? ଧର୍ମ ତ ହେଲା ମନର ଗୋଟାଏ ବିଶ୍ୱାସ । ଯେ ଯେପରି ପାରୁଛି ଭଗବାନଙ୍କୁ ପ୍ରାର୍ଥନା କରିପାରେ । ତା ଉପରେ ଏତେ ଜୋର ଦେବା କଣ ଉଚିତ ?

ସୁରଭିର ଏ ଯୁକ୍ତି ସମକ୍ଷରେ ତାର ପିତାମାତା କୌଣସି ଯୁକ୍ତି ଦେଖାଇ ପାରିଲେ ନାହିଁ ସିନା କିନ୍ତୁ ସେମାନଙ୍କର ଜନ୍ମଗତ

ସଂସ୍କାର ଧର୍ମାନ୍ତର ଗ୍ରହଣ ବିନା ଏ ବିବାହରେ ସମ୍ମତି ଦେଇ ପାରିଲା ନାହିଁ । ସୁରେଶର ପିତାମାତା ଏ ସମ୍ବାଦ ପାଇ ଏକବାରେ ଆତଙ୍କି ଉଠିଲେ । ସେମାନେ ଭାବିଥିଲେ ପୁଅକୁ ବିଭାକରାଇ ଘରକୁ ଆଣିବେ ଗୋଟିଏ ସାଲଙ୍କାର ସୁନାଖଣ୍ଡିକା ପରି ବହୂ । ବହୂ ଆସିଲେ ଘର ପୂରି ଉଠିବ, ବୁଢ଼ୀଙ୍କ ହାତରୁ କାମ ଦାଇଟି ଛଡ଼େଇ ନେବ, ଏମିତି କେତେ କଣ । ତା ପରିବର୍ତ୍ତେ ପୁଅ ଯେତେବେଳେ ପ୍ରସ୍ତାବ କଲା ଯେ କଲେଜ ପଢ଼ୁଆ ଗୋଟାଏ ଖ୍ରୀଷ୍ଟାନ ଝିଅକୁ ବିବାହ କରିବ ସେତେବେଳେ ସେମାନେ ଆତଙ୍କି ଉଠିଲେ । କିନ୍ତୁ ଗୋଟିଏ ବୋଲି ପୁଅ । କଣ କରିବେ ଆଉ । ଶେଷରେ କେତେକ ସମାଜ ସଂସ୍କାରକ ପ୍ରସ୍ତାବ କଲେ ଯେ କନ୍ୟାକୁ ଶୁଦ୍ଧି କରାଇ ହିନ୍ଦୁଧର୍ମକୁ ନେଇ ଆସିଲେ ବିବାହ କରିବାରେ ଆଉ କୌଣସି ଅସୁବିଧା ନ ଥିବ । ସୁରେଶ ମନକୁ କିନ୍ତୁ ଏକଥା ପାଇଲା ନାହିଁ । ସେ ଭାବିଲା ଏ ସବୁ ଶୁଦ୍ଧିଫୁଦ୍ଧି କେବଳ ଆତ୍ମପ୍ରବଞ୍ଚନା ଛଡ଼ା ଆଉ କିଛି ନୁହେଁ । ସେ ଯୁକ୍ତି କରି କହିଲା—ମନୁଷ୍ୟ ସହିତ ମନୁଷ୍ୟର ସମ୍ବନ୍ଧ । ଏଟା ପ୍ରକୃତିର ଇଙ୍ଗିତ । ଏଥିରେ ଧର୍ମ ବା ସଂପ୍ରଦାୟର ସ୍ଥାନ କାହିଁ ?

ବହୁ ବାଧାବିଘ୍ନ ସତ୍ତ୍ୱେ ଉଭୟ ସଂପ୍ରଦାୟରେ ଧର୍ମଧ୍ୱଜୀମାନଙ୍କର ଆପତ୍ତି ସତ୍ତ୍ୱେ ପ୍ରକୃତିନ୍ହିଁ ଜିଣିଲା । ସୁରେଶ ଓ ସୁରଭିଙ୍କ ମଧ୍ୟରେ ଗୋଟିଏ ମାତ୍ର ଫୁଲମାଳର ବିନିମୟରେ ବିବାହ ହୋଇଗଲା । ସେତେବେଳକୁ ସୁରେଶ ଓ ସୁରଭି ଦୁଇଜଣଯାକ ମେଡ଼ିକେଲ ଗ୍ରାଜୁଏଟ ହୋଇ ସାରିଥିଲେ । ସେମାନେ ଚାଲି ଆସିଥିଲେ ଏ ସୁଦୂର ସ୍ଥାନକୁ ଆପଣାର କର୍ମଜୀବନ କଟାଇବା ପାଇଁ ।

ସେମାନେ ଆଜି ହିନ୍ଦୁ ନୁହନ୍ତି କି ଖ୍ରୀଷ୍ଟାନ ନୁହନ୍ତି, ଯୋଡ଼ିଏ ଭାବବିଭୋର ମାନବ ହୃଦୟର ମିଳନରେ କୌଣସି ସାଂପ୍ରଦାୟିକ ବିଭେଦର ସ୍ଥାନ ନାହିଁ । ସେମାନେ ସେବାଭାବକୁ ଆପଣାର ଧର୍ମ

ରୂପେ ଗ୍ରହଣ କରିଛନ୍ତି । ଉଭୟେ ମିଳି ସ୍ଥାପନ କରିଛନ୍ତି ଏକ ଆଦର୍ଶ ସେବାସଦନ ଯେଉଁଠାରେ କି ଜାତି, ଧର୍ମ, ବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ଆର୍ତ୍ତ ପୀଡ଼ିତର ଚିକିତ୍ସା କରାହୁଏ ।

ଆଦର୍ଶ ସେବାସଦନର ସୁନାମ ନାନା ସ୍ଥାନରେ ପରିବ୍ୟାପ୍ତ ହେବାକୁ ଲଗିଲା । କାରଣ ସେଠାରେ ଯେଉଁ ଚିକିତ୍ସା କରାଯାଏ ତାହା ମାନବିକତା ଓ ଆନ୍ତରିକତା ଉପରେ ପ୍ରତିଷ୍ଠିତ ।

ସୁରେଶ ଦିନେ ଖବର ପାଇଲା ଯେ ତାର ମା କଠିନ ରୋଗାକ୍ରାନ୍ତ ହୋଇ ପଡ଼ିଛନ୍ତି । ସେ କାଳ ବିଳମ୍ବ ନ କରି ଗାଁକୁ ଦୌଡ଼ିଯାଇ ଅଜ୍ଞାନ ଅବସ୍ଥାରେ ମାଙ୍କୁ ଚିକିତ୍ସା ପାଇଁ ନେଇ ଆସିଲା ସେବାସଦନକୁ । ସୁରେଶର ଚିକିତ୍ସା ଓ ସୁରଭିର ସେବାର ଫଳରେ ବୃଦ୍ଧା କ୍ରମଶଃ ରୋଗମୁକ୍ତ ହୋଇ ଉଠିଲେ । ଯେତେବେଳେ ତାଙ୍କ ଜ୍ଞାନର ସଞ୍ଚାର ହେଲା ସେତେବେଳେ ସେ ଦେଖିଲେ ଯେ ଜଣେ ନାରୀ ଅକ୍ଳାନ୍ତ ଭାବରେ ତାଙ୍କର ସେବା କରୁଛନ୍ତି । ବୃଦ୍ଧା ପ୍ରଥମେ କିଛି ବୁଝି ପାରି ନ ଥିଲେ । ତା ପରେ ଯେତେବେଳେ ସେ ସୁରେଶଠାରୁ ବୁଝିଲେ ଯେ ଶୁଶ୍ରୂଷାକାରିଣୀ ତାଙ୍କର ପୁତ୍ରବଧୂ ସେତେବେଳେ ବୃଦ୍ଧାଙ୍କର ଜନ୍ମଗତ ଧର୍ମ ବିଶ୍ୱାସ ବା ସଂସ୍କାର କୁଆଡ଼େ ଉଡ଼ିଗଲା, ଜାଗି ଉଠିଲା ତାର ବଦଳରେ ମାତୃହୃଦୟର ସ୍ୱାଭାବିକ ବାତ୍ସଲ୍ୟ । ସେ ସୁରଭିକୁ କୁଣ୍ଢାଇ ପକାଇ କହିଲେ—ମା ତୋ ପରି ଲକ୍ଷ୍ମୀକୁ ପାଇ ସୁଦ୍ଧା ମୁଁ ଏପର୍ଯ୍ୟନ୍ତ କାଙ୍ଗାଳିନୀ ହୋଇ ବସିଥିଲି ।

ତା ପରେ ସୁରେଶକୁ ପାଖକୁ ଡାକି ବୃଦ୍ଧା କହିଲେ—ବାପ, ମୋର ଭ୍ରମ ଆଜି ତୁଟି ଯାଇଛି । ମୁଁ ଆଶୀର୍ବାଦ କରୁଛି, ଭଗବାନ୍ ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ ।

---

# ବର୍ମୀ ଟେଂରନ୍ତି

ଶ୍ରୀ ଜାନକୀବଲ୍ଲଭ ମହାନ୍ତି

ପ୍ରଥମ ଘଣ୍ଟା ବାଜିଲା । ପନ୍ଦର ମିନିଟ ପର୍ଯ୍ୟନ୍ତ ରଙ୍ଗାଳୟ ନିସ୍ତବ୍ଧ ହୋଇଗଲା । ଦର୍ଶକମାନେ ଯେଝା ସ୍ଥାନରେ ନୀରବ ହୋଇ ଅନାଇଁ ରହିଲେ ।

ଦ୍ୱିତୀୟ ଘଣ୍ଟି ହେଲା । ରଙ୍ଗମଞ୍ଚର ପରିଚାଳକ ରଙ୍ଗମଞ୍ଚ ଉପରକୁ ଆସି କହି ଦେଇଗଲେ "ନାଟକ ଆଉ ପାଞ୍ଚ ମିନିଟ ପରେ ଆରମ୍ଭ ହେବ ।" ଦର୍ଶକ ମହଲରେ ଶୃଙ୍ଖଳା ଖେଳିଗଲା—ମୁହୂର୍ତ୍ତକ ପାଇଁ ସେମାନେ ପାଞ୍ଚ ମିନିଟ ବିଳମ୍ବର ଦୀର୍ଘତା କଳନା କରି ପାରିଲେ ନାହିଁ । ମନେହେଲା, ସେମାନେ ଯେପରି ଅଭିନୟର ଆରମ୍ଭ ଦେଖିବା ପାଇଁ ଅଧୀର ହୋଇ ପଡ଼ିଥିଲେ ।

ତୃତୀୟ ଘଣ୍ଟି ବାଜୁ ନ ବାଜୁଣୁ ରଙ୍ଗମଞ୍ଚର ଯବନିକା ଉଠିଗଲା—ନାଟକରେ 'ନାୟୀ ଚରିତ୍ର ଚିତ୍ରଣ' । ନାୟୀ ପୁଣି ନାୟୀ, ବେଶ ଭୂଷାରେ—ପ୍ରାକୃତିକ, ଆଧୁନିକ କୌତୂହଳପ୍ରଦ । ସେ ଅଭିନୟର ଆରମ୍ଭର ଗୁରୁତ୍ୱ ବଜାୟ ରଖି ପାରିଲେ । ତାଙ୍କର ଅଙ୍ଗଭଙ୍ଗୀ ଓ ଅଭିନୟ ସଙ୍ଗେ ସଙ୍ଗେ ତାଙ୍କର ନାୟୀ ସୁଲଭ କ୍ଷୀଣ ମଧୁର ସ୍ୱର ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରି ପକାଇଲା ।

ଦୃଶ୍ୟ ଶେଷ ହେଲା । ରଙ୍ଗମଞ୍ଚର ପରିଚାଳକ ଦୃଶ୍ୟ ପରିବର୍ତ୍ତନର ସୂଚନା ଦେଲେ । ଯବନିକା ପଡ଼ିଲା, ରଙ୍ଗମହଲ କମ୍ପାଇ ଘନ ଘନ ଶୁଣାଗଲା ଦର୍ଶକମାନଙ୍କର କରତାଳି ଆଉ ପାଟି ।

ଯବନିକାର ଉତ୍ତୋଳନ ହେଲା । ସୂତ୍ରଧାର ଆସି କହି ଦେଇଗଲେ, "ନାଟକର ଶ୍ରେଷ୍ଠାଂଶେ ଯେଉଁ ନାରୀ ପ୍ରଥମ ଦୃଶ୍ୟରେ ଓହ୍ଲାଇଗଲେ; ସେ ନୂତନ କରି ଗଲା କେତେଦିନ ହେବ ନାଟକ ଦଳର ଅନ୍ତର୍ଭୁକ୍ତ ହୋଇଅଛନ୍ତି । ସେ ଭଦ୍ର ପରିବାରରୁ ଆସିଛନ୍ତି । ତାଙ୍କୁ ପାଇ ନାଟକଦଳ ତାଙ୍କ ପ୍ରତି କୃତଜ୍ଞ । ତାଙ୍କ ସହିତ ତାଙ୍କର କନିଷ୍ଠା ଭଗିନୀ ମଧ୍ୟ ଅଛନ୍ତି—ତାଙ୍କର ଅଭିନୟର ସମୟ ଆସି ନାହିଁ—ଏହି ଅଭିନୟର ମଝିରେ ତାଙ୍କର ଆବିର୍ଭାବ ହେବ ।

ଆଉ ଥରେ ସମସ୍ତଙ୍କଠାରୁ କରତାଳି ହେଲା—ଜଣା ପଡ଼ିଲା, ଯେଉଁ ନାରୀ ତାଙ୍କର ପ୍ରଥମ ଏବଂ ନୂତନ ଆବିର୍ଭାବରେ ଦର୍ଶକ-ମଣ୍ଡଳର ଏତେ ପ୍ରୀତି ଓ ସହାନୁଭୂତି ଆକର୍ଷଣ କରି ପାରିଛନ୍ତି, ତାଙ୍କୁ ତାଙ୍କଭଗିନୀଙ୍କ ସହିତ ଅଭିନନ୍ଦନ ଜଣାଇବାକୁ ସେମାନେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲେ ଯେପରି ।

× × × ×

ଦୃଶ୍ୟର ପରିବର୍ତ୍ତନ ହେଲା । ଦୃଶ୍ୟପରେ ଦୃଶ୍ୟ ଗଡ଼ି ଚାଲିଲା । ଦୁଇ ଭଗିନୀଙ୍କର ଏକତ୍ର ସମାବେଶ । ଏକ ରାଜପ୍ରାସାଦର ଅଧିକାରିଣୀ—ଅନ୍ୟ ଏକ ପଥ ପାର୍ଶ୍ୱଚାରିଣୀ । ଯେପରି ଜଣା ପଡ଼ୁଥିଲା, ଦୁଇ ଜଣଙ୍କ ଅବସ୍ଥାରେ ଏହିପରି ପ୍ରଭେଦ—ଏହିପରି ପାର୍ଥକ୍ୟ, ଏଇ ରୂପେ ଜୀବନ୍ତ ଜଗତରେ ଦୁଇ ପ୍ରକାରେ ଗଠିତ ଦୁଇଟି ପ୍ରାଣୀ । ଦୁଇଭଗିନୀ ନୁହନ୍ତି—ସେଠାରେ ରକ୍ତର ସମ୍ପର୍କ ନାହିଁ, ଆକୃତିର ସମତା ନାହିଁ । ଅଛି ରଙ୍ଗମଞ୍ଚର ଉପଯୋଗୀ ପରିପାଟି—ଯଥାର୍ଥରେ ଜଣେ ଭିକାରୁଣୀ—ଜଣେ ରାଜବୋଗର ଅଧିକାରିଣୀ ।

× × × ×

ମୁଁ ଅଭିନୟର ବିବରଣୀ ପଢ଼ୁଥିଲି । ମତେ କିପରି ଏହା ଅସୁନ୍ଦର ଦେଖାଗଲା । ମୁଁ କୌଣସି ପ୍ରକାରରେ ଅନୁମାନ କରି

ପାରିଲେ ନାହିଁ, କପରି ଦୁଇଟି ସହୋଦରା ଭଉଣୀ କ୍ଷୁଧା ନିବାରଣ ପାଇଁ ଏତେ ବଡ଼ ଜନତା ଆଗରେ ସ୍ୱାଭାବିକ ସ୍ନେହ ଅଧିକାରରୁ ନିଜକୁ ନିଜେ ବଞ୍ଚିତ କରି ଏତେ ବଡ଼ ଅକୃତ୍ରିମତାର ଆଶ୍ରୟ ନେଇ ପାରିଛନ୍ତି । ଆଉ ଏହା ଏକମୁଖରେ ସମର୍ଥନ କରୁଛି ଏ ମୂର୍ଖ ଜନତା । ହୁଏ ତ କେହି ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ସିଂହାସନ ଅଧିକାରିଣୀଙ୍କୁ ପଦକ ଦେଉଥିବା ସ୍ଥଳେ କେହି ବା ସଙ୍ଗୀତ ମୂର୍ଚ୍ଛନାରେ ଭିକାରୁଣୀ ଅଙ୍ଗରେ ତା ପଦକ ଝୁଲାଇ ଦେଉଛି । ଦୁହେଁ ଜନତାକୁ ଆକର୍ଷଣ କରିବାରେ ବ୍ୟସ୍ତ—ଜଣେ ରୂପରେ, ଅନ୍ୟ ଜଣେ ସଙ୍ଗୀତରେ ।

ଦୃଶ୍ୟ ପରିବର୍ତ୍ତନ ପରେ ନାଟକ ପରିଚାଳକ ଆସି କହି ଦେଇଗଲେ, ଯେଉଁମାନେ ଏତେ ପ୍ରଶଂସାପତ୍ର ପାଇଗଲେ, ଏ ଦୁଇଜଣଯାକ ସହୋଦରା ଭଗିନୀ, ଦୁହେଁ ଓଡ଼ିଆ, ବର୍ମା ଫେରନ୍ତି । ଆଗେ ଆର୍ଥିକ ଅବସ୍ଥା ଖୁବ୍ ଭଲ ଥିଲା । ବର୍ମାରୁ ଫେରି ଜୀବିକା ନିର୍ବାହ ନିମନ୍ତେ ନାଟକ ଦଳର ଆଶ୍ରୟ ନେଇଛନ୍ତି । ଓଡ଼ିଆ ସ୍ପଷ୍ଟ କହିବାକୁ ବର୍ତ୍ତମାନ ଅକ୍ଷମ । ସେହି ହେତୁ ଦର୍ଶକଗଣ ଏହା ମାର୍ଜନା କରିବେ ।

× × × ×

ଠେଙ୍କିକିଆ ଟିକଟ ଦିଖଣ୍ଡ କରି ଆଗ ସାମନା ଚଉକି ଧାଡ଼ିରେ ବସିଥିଲୁ ଚନ୍ଦନ ଆଉ ମୁଁ । ମନରେ କ୍ଷୋଭ ଆସିଲା । ହୃଦୟ ଭିତରୁ ଦୁଃଖର ବହ୍ନି ଜଳି ଉଠିଲା । ଓଡ଼ିଆ ଝିଅ ଜୀବନ ଭୟରେ ବର୍ମାରୁ ପଳେଇ ଆସି ଓଡିଶାରେ ଜୀବନ ରକ୍ଷା କରିବା ଉଦ୍ଦେଶ୍ୟରେ ଗୋଟିଏ ନାଟକ ଦଳର ଅନ୍ତର୍ଭୁକ୍ତ ହୋଇଛି । ନଚେତ୍ ତାର ଓଡ଼ିଶାରେ ସ୍ଥାନ ନାହିଁ । ଓଡ଼ିଶାରେ ଜୀବନ ନିର୍ବାହ କରିବାର ପନ୍ଥା ବନ୍ଦ । ଭାବୁଥିଲି, ଯଦି ଅଭିନୟ ଦେଖିବାର ଆଗ୍ରହକୁ

ଏଡ଼ଦେଇ ଦର୍ଶକ ଟିକେଟ୍ର ମୂଲ୍ୟକୁ ଛୁଧାର୍ତ୍ତି ପାଇଁ ବନ୍ଦୋବସ୍ତ କରିଥାନ୍ତା, ତେବେ ଓଡ଼ିଆ ଝିଅଙ୍କୁ ଆଜି ଏପରି ଗୋଟିଏ ବ୍ୟବସାୟୀ ନାଟକର ଦଳର ଅନ୍ତର୍ଭୁକ୍ତ ହେବାକୁ ପଡ଼ ନ ଥାନ୍ତା ।

× × × ×

ସିନ୍ଦୂର ଫାଟି ଆସୁଥାଏ । ଶୀତ ଦିନର ଜାଡ଼ୁଆ ବଡ଼ ରାତିଟା ପାହି ଆସୁଥାଏ—ଏକାବେଳକେ ଦିନ ହୋଇ ନ ଥାଏ । ଜାଙ୍ଗୁଲୁ ଜାଙ୍ଗୁଲୁ ରାତି ଥାଏ । ତଥାପି ବାଟ ବାରି ହେଉଥାଏ । ସକାଳୁଆ ଭ୍ରମଣରେ ବାହାରିଥାଉଁ ମୁଁ ଆଉ ଚନ୍ଦନ ।

ସମୟର ନୀରବତା ଭାଙ୍ଗି ଚନ୍ଦନ କହିଲା, "ମୋ ପାଇଁ କିଛି ଗୋଟାଏ ମୀମାଂସା କଲୁ ନାଇଁ, ବୀର ?" ମୁଁ କହିଲି, "ଠିକ୍ କଥା, ମୋର ବି ମନେ ପଡ଼ୁଛି । ତୁ କାଲିର ସମ୍ବାଦପତ୍ର ଦେଖିନାହୁଁ ? ଗୋଟିଏ ବିଧବା ପାଇଁ ପାତ୍ର ଆବଶ୍ୟକ—ସେ ମଧ୍ୟ ନର୍ସିଙ୍ଗ ପଢ଼ୁଛନ୍ତି, ମନ୍ଦ କଣ ?" ଚନ୍ଦନ ନୀରବରେ ତାର ସମ୍ମତି ଜଣାଇଲା ।

ଚନ୍ଦନ ମୋର ପିଲାଦିନର ସଙ୍ଗୀ—ଧୂଳିଖେଳରୁ ଆରମ୍ଭ କରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେ ମୋ ସାଙ୍ଗେ ବନ୍ଧୁତା ରକ୍ଷି ଆସିଛି । ସେ ଆଜି ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ଜିଦ୍ ଧରି ବସିଛି ଯେ ବିବାହ ସୂତ୍ରରେ କିଛି ଗୋଟାଏ ସମାଜ ସଂସ୍କାର କରିବ, ଯାହା ତାଙ୍କର ଗୋଷ୍ଠୀରେ ନ ଥିଲା ବା ନାହିଁ । ଏହି ସମ୍ପର୍କରେ ସେ ମୋ ଉପରେହିଁ ବେଶୀ ନିର୍ଭର କରୁଛି । ହୁଏତ ଅନ୍ୟ କାହାଠାରୁ ଏପରି ପ୍ରସ୍ତାବ ଶୁଣିଥିଲେ, ମୁଁ ତାକୁ ହସରେ ଉଡ଼ାଇ ଦେଇଥାନ୍ତି —ସମାଜ ତାକୁ ଜାତିଦ୍ରୋହ ଦଣ୍ଡରେ ଦଣ୍ଡିତ କରିବ, ଏହା ତ ନିଶ୍ଚୟ । ସମାଜ ବିରୁଦ୍ଧରେ ଠିଆ ହେବା ଦରକାର । କିନ୍ତୁ ଆଜି ମୋଠାରେ ସେ ଏ ପ୍ରସ୍ତାବଟି ଅତି ଦୁଃଖରେ କରୁଛି । ଆଉ

ସେଥିପାଇଁ ମୁଁ ହୋଇଛି ଏହି ଷଡ଼ଯନ୍ତ୍ରରେ ତାର ସାହାଯ୍ୟକାରୀ — ଏଇଟା ମୋ ପକ୍ଷରେ ଅସ୍ୱାଭାବିକ ହୋଇ ନାହିଁ ।

"ମୋର ଯଦି କରିପାରିବାର ଶକ୍ତି ଥାନ୍ତା ଖାର, ତେବେ ମୁଁ ତୋର ସାହାଯ୍ୟ ନେଇଥାନ୍ତି କାହିଁକି ?" ମୋ କଥା ସରୁ ନ ସରୁଣୁ ଚନ୍ଦନ କହି ସାରିଥିଲା । ସୂର୍ଯ୍ୟଦେବଙ୍କର କଅଁଳ କିରଣ-ରେଖା ବିକ୍ଷିପ୍ତ ହୋଇ ପଡ଼ି ଯାଇଥିଲା । ବୁଦା, ଗଛ ତଳେ ଆମେ ଚାଲିଥାଉଁ — ଆମେ ଯେଉଁ ଆଡ଼େ ଗଲୁ ସେ ଆଡ଼େ ଖରା ଆମ ଉପରେ ।

ମୁଁ କହିଲି, "ତୁ ମୋତେ ମୋର କହିବାର କଥାଟା ଦେଖାଇ, ମୋ ହୃଦୟରେ ଆଘାତ ଦେଉଛୁ ଚନ୍ଦନ ! ମୁଁ କଣ ମୋ କର୍ତ୍ତବ୍ୟ ଭୁଲି ଯାଉଛି ?" ଚନ୍ଦନ ଅାଶ୍ୱସ୍ତ ହେଲା । ଆଶୁ ଭବିଷ୍ୟତର ସ୍ୱପ୍ନତଳେ ସେ ଯେପରି ନିର୍ଭର ହୋଇ ବସି ରହିଲା । ଏତିକିବେଳେ ଗୋଟାଏ ଗୁଣ୍ଡୁଚିମୂଷା ବୁଢ଼ା ବରଗଛ ମୂଳଦେଇ ଚାଲିଗଲା । ସେ କହିଲା, "ଗୁଣ୍ଡୁଚିମୂଷା କେଡ଼େ ଭାଗ୍ୟବାନ୍ — ତା ପିଠିରେ ଏହି ଚିହ୍ନଟା ତାର ଦେଖୁଛୁ ?" ମୁଁ କହିଲି, 'ହଁ' । ସେ କହିଲା, "ସାମାନ୍ୟ ଗୁଣ୍ଡୁଚି ମୂଷାଟାଏ ରାମଚନ୍ଦ୍ରଙ୍କ ପାଇଁ ସେତୁବନ୍ଧ ବାନ୍ଧିଥିଲା— ସେଥିପାଇଁ ସନ୍ତୁଷ୍ଟ ହୋଇ ତାକୁ ଆଉଁସି ଦେଇ ତା ପିଠିରେ ହାତ ମାରି ଦେଇଥିଲେ ।" ମୁଁ କପଟ ବିଦ୍ରୂପ କରି କହିଲି, "ତୋର ଏ ସବୁ କହିବାର ମାନେ ?"

ଚନ୍ଦନ ଆଉ କିଛି କହିଲା ନାହିଁ । ସେ ଯେପରି ଅନୁଭବ କରୁଥିଲା, ଅର୍ଥ ମୁଁ ଠିକ୍ ବୁଝିପାରୁଛି ।

ହସର ହେଲା ଉଠିଲା । ଆମେ ଯେ ଏମିତି ଗପ କରି ଆସୁ ଆସୁ ଗାଁ ଶେଷ ମୁଣ୍ଡ ହାଟ ପଡ଼ିଆ ଯାଏ ଚାଲି ଆସିଲୁଣି କାହାର ଖିଆଲ ନାହିଁ । ସଡ଼କ କରରେ ଥିବା ଦୂରତ୍ୱ ନିର୍ଦ୍ଦେଶର ପଥର

ଉପରେ ମୋର ନଜର ପଡ଼ିବାରୁ ମୁଁ କହିଲି, "ଆମେ କଣ ଦୁଇ ମାଇଲ ଆସି ଗଲେଣି ?"

ସଙ୍ଗେ ସଙ୍ଗେ ଗତି ବନ୍ଦ—ଦୁହେଁ ନିସ୍ତବ୍ଧ—ଘର ମୁହଁରେ ଫେରି ଆସିବାକୁ ହେଲା ।

× × × ×

ଜୀବନର ଜଟିଳ କ୍ଷେତ୍ରରେ ପଡ଼ି ଉକ୍ତ ବିଧବା—ନର୍ସିଙ୍ଗ ପଢ଼ା ଶେଷ କରି ନ ପାରି ଘରେ ବସିଛନ୍ତି । ମୁଁ ବିବାହର ପ୍ରସ୍ତାବ କାଢ଼ି ମଧ୍ୟସ୍ଥ । କଥା ପ୍ରସଙ୍ଗରେ ପଚାରିଲି, "ଆପଣଙ୍କର ଏଥିରେ ମତ ?

ସେ କହିଲେ, "ମୋର ଇତିହାସ ବୋଧହୁଏ ଆପଣ ଜାଣନ୍ତି ନାହିଁ । ମୋର ମଥାରୁ ସିନ୍ଦୂର ଗାର ଲିଭି ନାହିଁ । ହାତରୁ ଚୂଡ଼ି ଖସି ନାହିଁ । ମୁଁ ସ୍ୱାମୀ ସୁଖରୁ ବଞ୍ଚିତ । ମାତ୍ର ସ୍ୱାମୀ ମୋର ନିରୁଦ୍ଦେଶ । ତାଙ୍କର ଖବର ନାହିଁ । ସେହି ହେତୁ ମୋର କେତେ ଜଣ ସଙ୍ଗୀ ରହସ୍ୟରେ ଦୈନିକ ପତ୍ରିକାରେ ଉକ୍ତ ପତ୍ର ଖଣ୍ଡିକ ପ୍ରକାଶ କରିଥିଲେ । ମୁଁ ଆଜି ତାହାର ପ୍ରତିବାଦ ଦେଇ ଅଛି । ବୋଧହୁଏ ତାହା କାଲି ପ୍ରକାଶ ପାଇବ । ମୋର ବାପା ଓ ମାଆ ମୋ ପାଖରେ । ମୋର ଦୁଇ ଭଗିନୀ ଯେ କି ଏକ ବ୍ୟବସାୟୀ ନାଟକଦଳର ଅନ୍ତର୍ଭୁକ୍ତ, ସେମାନଙ୍କ ଭିତରୁ ଆପଣଙ୍କ ସଙ୍ଗୀ ଯଦି···।"ସେ ଆଉ ବିଶେଷ କିଛି କହି ପାରିଲେ ନାହିଁ । ଟିକିଏ ରହି ମତେ ପ୍ରଶ୍ନ କଲେ "ପାରିବେ କି ?"

ଏତେଗୁଡ଼ାଏ କଥା ସେ ଅନର୍ଗଳ କହିଗଲେ । ମନେ ହେଲା ଯେପରି ତାଙ୍କର ମୁହଁରୁ କେତେ ଯୁଗର ଇତିହାସ ପଢ଼ି ହେଉଛି ।

ମୁଁ କହିଲି, "ଭାବି କହିବି, ନମସ୍କାର ।" ସେ ପ୍ରତିନମସ୍କାର ଜଣାଇଲେ । ମୁଁ ଫେରି ଆସିଲି ।

ଏହାର ଏକମାସ ପରେ—

ଚନ୍ଦନ ମାନବକଣ୍ଠ ଥାଉ ସମାଜ ସଂସ୍କାରର ପରିଚୟ ଦେଇ ଦୁନିଆ ଆଗରେ ମୂର୍ଖଜନତାର ଭ୍ରାନ୍ତି ଦର୍ଶାଇ ନାଟକର ଅଭିନେତ୍ରୀ 'ସୁନ୍ଦରୀଙ୍କୁ' ବିବାହ କରି ସାରିଛି । ଦୁହିଙ୍କ ଜୀବନ ଲାଳିତ୍ୟମୟ— ଗୋଟିଏ ବୃନ୍ତରେ ଦୁଇଟି ପୁଷ୍ପ ।

ଜ୍ୟେଷ୍ଠା ଭଗିନୀ ସତ୍ୟଭାମା ନିଜର ସତୀତ୍ୱ ବଜାୟ ରଖି ଭରଣପୋଷଣ ଲାଗି ନିଜର ପନ୍ଥା ଦେଖି ନେଇଛନ୍ତି । ହିନ୍ଦୁ ରମଣୀର ସ୍ୱାମୀ ଥିବା ସ୍ଥଳେ ସେ ଦ୍ୱିତୀୟ ବର ଗ୍ରହଣ କରେ ନାହିଁ । ସେ ବର୍ମାବାସୀ ହେଲେ ମଧ୍ୟ ହିନ୍ଦୁ, ଓଡ଼ିଆ । ତାଙ୍କର ସମୁଚିତ କର୍ତ୍ତବ୍ୟର ପରିଚୟ ଦେଇ ସେ କନିଷ୍ଠା ଭଗିନୀ ସୀତାକୁ ବ୍ୟବସାୟୀ ନାଟକ ଦଳରୁ ନେଇଯାଇ ନିଜ ପାଖରେ ରଖିଛନ୍ତି । ସୀତାର ନାଟକୀୟ ସ୍ୱଭାବ ପରିବର୍ତ୍ତିତ ହୋଇ ତାର ରମଣୀ ଜୀବନ ପରିମାର୍ଜିତ ହୋଇ ଆସିଛି । ଯଥାର୍ଥରେ ତାର ନାରୀସୁଲଭ ଗୁଣଗୁଡ଼ିକ ଫୁଟି ପାରିଅଛି । ଆଉ ସେମାନଙ୍କର ଭାଇଟି ନିଜର ଛାତ୍ର ଜୀବନରେ ସମାପ୍ତି ଦେଇ ସଂସାରର ଜଟିଳ ଜୀବନ ମୁଣ୍ଡପାତି ବହି ନେଇଛି । କର୍ମମୟ ଜୀବନର ଅନ୍ତର୍ଭୁକ୍ତ ହୋଇ ସେ ଜୀବନର ଦାୟିତ୍ୱ ହାସଲ କରି ପାରିଛି ।

ଏବେ ସେ ରେଲବାଇ କମ୍ପାନୀର ଦୈନନ୍ଦିନ ରୁଟିନ୍ ବନ୍ଧା କାମ ପରେ ମଙ୍ଗଳବାର ଛୁଟିରେ ଘରେ ବସିଲେ କହେ, "ମାଆଲୋ, ବର୍ମା ଜୀବନ କି ସୁଖମୟ ଥିଲା ।" ମାଆ କହେ, "ଯେତେ ହେଲେ ତ ଓଡ଼ିଆ ମାଟିର ପୁଅ, ବର୍ମା କେଇଦିନ ସହନ୍ତା ?" ଆଖିରୁ ଦୁଇ ଧାର ହୋଇ ପାଣି ଗଡ଼ିପଡ଼େ ।

ନିତ ସକାଳ ଯାଇ ସଞ୍ଜ ଆସେ—ସନ୍ଧ୍ୟା ପରେ ପୁଣି ରାତିର ଅବସାନରେ ସକାଳ ପହଞ୍ଚି ଯାଏ— ଦୁନିଆର ଦିନ ବିଦିଆ

ଇତିହାସ ଭିତରେ, କର୍ମକ୍ଳାନ୍ତ ଜୀବନର ଦୈନନ୍ଦିନ ରୁଟିନ ଭିତରେ ମୁଁ ଏହି ବର୍ମା ଫେରନ୍ତ ଓଡ଼ିଆ ପରିବାରର ଶିକ୍ଷା ଓ ମୋର ଚିର ଜୀବନର ସଙ୍ଗୀ ଚନ୍ଦନର ମହତ୍ତ୍ୱ ଭୁଲି ପାରି ନାହିଁ । କର୍ମର ଗଭୀର ଗୁରୁତ୍ୱପରେ କେତେଥର ଏଗୁଡ଼ାକ ଭୁଲି ଯିବାକୁ ଚେଷ୍ଟା କରିଛି । କିନ୍ତୁ ଦିନେ ସନ୍ଧ୍ୟାରେ କେହି ଆସି ମୋ ଦୁଆରେ ଠିଆ ହୋଇ କହିଲେ, "ମୁଁ ବର୍ମାରୁ ପଳାଇ ଆସିଛି—ବାବୁ ଗଣ୍ଡାଏ ଭିକ ଦିଅ—ମୁଁ ଓଡ଼ିଆ ।"

ଭିକ ଦେଲାବେଳେ କ୍ଷଣକ ପାଇଁ ମୁଁ ରହିଯାଏ । କଣ ଗୋଟାଏ ଭାବନାର କ୍ଷୀଣ ସ୍ମୃତି ଯେପରି ଜାଗିଉଠେ ମୋ ମନ ଭିତରେ ।



ମୁଦ୍ରାକର—ଶ୍ରୀ ବସନ୍ତ କୁମାର ଦାଶ, ଶ୍ରୀ ସତ୍ୟନାରାୟଣ ପ୍ରେସ,
ଓଡ଼ିଆବଜାର କଟକ—୨

